# ଗୌତମର ଡାଇରି ପ୍ରସଙ୍ଗରେ

ବଡ଼ମାନଙ୍କୁ ଭଲ ଲାଗେ ସେମାନଙ୍କର ପିଲାଦିନ । ବୟସ ଯେତିକି ବଢ଼ୁଥାଏ, ସେତିକି ପ୍ରଗଳ୍ଭଭାବରେ କୌଣସି ଅପହଞ୍ଚ ଦୂରତାରେ ଥିବା ପିଲାଦିନର କଥାପେଡ଼ୀକୁ ସେମାନେ ଖୋଲି ଦେଉଥାନ୍ତି, ସତେ ଯେମିତି ପିଲା ହୋଇଯାଉଥାନ୍ତି ଏବଂ ସ୍ମୃତିର ତାତିରେ ବର୍ତ୍ତମାନକୁ ଚିହ୍ନିଉଥା'ନ୍ତି ।

ପିଲାଦିନ ଏଇଥିପାଇଁ ଭଲ ଲାଗେ ଯେ, ସେକାଳର ଆଖିଗୁଡ଼ାକ ଥାଏ ଭାରି ତୀକ୍ଷ୍ଣ, ମନ ଥାଏ ଚଞ୍ଚଳ, ଚେତନା ଥାଏ ସୃଜନଶୀଳ ଓ ସ୍ୱପ୍ନ-ଝଲଝଲ । ବଡ଼ମାନଙ୍କ ଆଖିକୁ ଯାହା ଦିଶେ ନାହିଁ, ସେମାନଙ୍କ ସପନ ଓ କଳ୍ପନାରେ ଯାହା ସହଜରେ ଧରାଦିଏ ନାହିଁ, ସେମାନଙ୍କ ତୁଣ୍ଡରେ ଯାହା କହିହୁଏ ନାହିଁ, ପିଲାମାନେ ତାହା କରିପାରୁଥିବାରୁ– ଆପଣା ବଡ଼ପଣ ହାରିଯାଉଛି ବୋଲି ସେମାନେ ଅନୁଭବ କରନ୍ତି । ତେଣୁ ସେମାନଙ୍କୁ ସହିପାରନ୍ତି ନାହିଁ । ସେମାନଙ୍କ ଚାରିପାଖରେ ଆକଟର ଅଡ଼ମାନ ପୋତନ୍ତି । ଶାସନ କରନ୍ତି । ପରାଧୀନ କରି ରଖନ୍ତି । ଗୌତମର ଡାଇରି ସେଇପରି ଏକ ପିଲାର ଜୀବନଚର୍ଯ୍ୟାର କଥା । ଏଥିରେ ଅଛନ୍ତି ତାରି ପରି କିଛି ପିଲା, କିଛି ବୁଢ଼ାବୁଢ଼ୀ, ପିଲାମାନଙ୍କର ବାପା ମା' ଏବଂ ସେମାନଙ୍କ ନିକଟତମମାନେ । ଗୌତମ ତାର ଜୀବନ ଓ ଜଗତ ସଂପର୍କିତ ବିଚାରକୁ ନିଜ ହାତରେ ଲେଖିନି । ଲେଖିଛନ୍ତି ତାର ବାପା । ନିଜ ଭିତରେ ସେ ଗୌତମର ଏକ ସମର୍ଥ ପିତୃତ୍ୱ ଓ ସ୍ୱପ୍ନ-ବିଭୋର ଶୈଶବର ବୈଚିତ୍ର୍ୟକୁ ଅନୁଭବ କରିଛନ୍ତି । ସେଥିପାଇଁ ଓଡ଼ିଆ କଥାସାହିତ୍ୟର ଇତିହାସରେ ଶୈଶବର ଅଭିଲେଖ 'ଗୌତମର ଡାଇରି' ଏକ ଅଲଗା ଜାତର ରଚନା ଏବଂ ଏହା ସକଳ ବୟସ ଓ ମାନସିକତାର ପାଠକମାନଙ୍କୁ ଆପଣାଭିତରେ ସମାହିତ ରଖି ପାରିବ ବୋଲି ଅତ୍ୟନ୍ତ ସ୍ପଷ୍ଟ ଭାବରେ କୁହାଯାଇପାରେ ।

ସବୁକାଳର ଗୌତମମାନଙ୍କୁ

GOUTAMAR DAIRI

A Novel

by Gourang Charan Dash

**Published by Vidyapuri, Cuttack 753 002**

ISBN 81-7411-236-7

ପ୍ରଥମ ପ୍ରକାଶ ୧୯୯୮

ପ୍ରକାଶକ

ପୀତାମ୍ବର ମିଶ୍ର

ବିଦ୍ୟାପୁରୀ

ବାଲୁବଜାର, କଟକ ୭୫୩୦୦୨

ମୁଦ୍ରଣ

ବେଦ୍ବେସ୍ ପ୍ରିଣ୍ଟର୍ସ

ବାଖରାବାଦ, କଟକ ୭୫୩୦୦୨

ମୂଲ୍ୟ ଟ ୪୪.୦୦

ଉପକ୍ରମ :

"ଗୌତମର ଡାଇରି" ନାଁରେ କିଛି ଲେଖିବା ଆଗରୁ, ତା'ର ଭିତରି କଥାର ସୂଚନା ଦେବା ଉଚିତ ହେବ ବୋଲି ଭାବୁଛି । ଗୌତମକୁ ଏବେ ଏଗାର ବର୍ଷ । ତା'ର ସାର୍ ଏବଂ ବନ୍ଧୁମାନେ ତାକୁ ଏଇ ନାଁରେ ଡାକନ୍ତି । ସେଇଟି ତା'ର ଭଲ ନାଁ । କିନ୍ତୁ ଡାକ ନାଁ ଲିଟୁ । ତା'ର ଜେଜେଙ୍କର ଲିଟୁ ନାମଧାରୀ ଅତି ପ୍ରିୟ କୁକୁରଟିଏ ଥିଲା । ପ୍ରଥମେ ସିଏ ହିଁ ଗୌତମକୁ ଲିଟୁ ନାଁରେ ଡାକିବା ଆରମ୍ଭ କରିଦେଲେ । ସେଇଦିନୁ ଗୌତମ ଲିଟୁ ହୋଇଗଲା ।

ଏବେ ଲିଟୁ ପଢୁଛି ଅଷ୍ଟମ ଶ୍ରେଣୀରେ । ତା'ର ପ୍ରଥମ ଘରେ ପଢ଼ା ଆରମ୍ଭ ହୋଇଥିଲା, ତାକୁ ଯେତେବେଳେ ତିନିବର୍ଷ । ସେ ସ୍କୁଲକୁ ଯିବା ଆରମ୍ଭ କରିଥିଲା ଚାରିବର୍ଷ ବୟସରେ । ମାତ୍ର ସରକାର ଛଅବର୍ଷିଆ ପିଲାଙ୍କର ନାଁ ସ୍କୁଲ୍‌ରେ ଦରଜ କରିବାପାଇଁ କଡ଼ା ନିୟମ କରିଥିବାରୁ, ଲିଟୁ ପଢ଼ିବାକୁ ଯାଉଥିଲେ ବି, ତା'ର ନାଁ ଲେଖା ହୋଇପାରୁ ନ ଥିଲା ଏବଂ ଯୋଉ ଶ୍ରେଣୀରେ ନାଇଁ ସେଇ ଶ୍ରେଣୀରେ ସେ ବସି ଯାଉଥିଲା । ଭଲ ପଢୁଥିବାରୁ ତାକୁ ତଳ ଶ୍ରେଣୀକୁ ଆଣିବାରେ ସମ୍ଭାବନା ମଧ୍ୟ ନ ଥିଲା । ତେଣୁ ସରକାରଙ୍କୁ ତୁଷ୍ଟ କରିବାପାଇଁ ସରକାରୀ କାଗଜପତ୍ରରେ ତା ବୟସକୁ ବଢ଼ାଇ ଦିଆଗଲା । ଦୈବଯୋଗକୁ ସ୍କୁଲର ଶିକ୍ଷକ ତା ମା'ର ଭାଇ ହୋଇଥିବାରୁ ସେ ତାକୁ ମାମୁ ବୋଲି ଡାକୁଥିଲା ଏବଂ ତାଙ୍କର ସାଇକେଲ୍ ଆଗରେ ବସି ଯିବାଆସିବା କରୁଥିଲା ।

ପିଲାଟିଦିନରୁ ସେ ଭାରି ଚଗଲା । ଯାହାକୁ କହନ୍ତି, ଗୁଲଲା ଶଗଡ଼ରେ ହାତ ମାରିଦେବା ଜନ୍ତୁ । ତା'ର ଏ ଛଟପଟିଆ ମା' ପେଟରୁ । ମାତ୍ର ସେ

ସାଂଘାତିକ ଭାବରେ ଇଣ୍ଟେଲିଜେଣ୍ଟ୍ । ଆଙ୍ଗୁଠି ଦେଖେଇଲେ ମାନେ ବାହା ଗିଳିଯିବ । କଥା କହିବାରେ ବି ଓସ୍ତାଦ୍ । ମାତ୍ର ସେତେବେଳେ ସାର୍‌ମାନଙ୍କ କଥା ମାନୁଥିଲା । ନିଜ ଭାଷାରେ ଲିଖିତ ଯେକୌଣସି ବହି ଦେଲେ ଡଗ ଡଗ ହୋଇ ପଢ଼ି ଯାଉଥିଲା । ଇଂରାଜୀ ଭାଷାରେ ମୁଣ୍ଡକୁ ହେଡ୍, ଆଖିକୁ ଆଏ, ପାଟିକୁ ମାଉଥ୍, ପେଟକୁ ବେଲି କୁହାଯାଏ ବୋଲି ଜାଣିଥିଲା ଏବଂ କଥା କହିଲାବେଳେ ସେ ଶବ୍ଦଗୁଡ଼ିକୁ ସେ ପ୍ରୟୋଗ କରୁଥିଲା । ତା'ର ବହି କି ଖାତା ଉପରେ ଦ୍ୱିତୀୟ କି ତୃତୀୟ ଶ୍ରେଣୀ ଲୁହି ଲେଖିଦେଲେ, ଭାରି ଖୁସି ହେଉଥିଲା । ସାଙ୍ଗମାନଙ୍କୁ ଦେଖାଉଥିଲା । ସେମାନଙ୍କ ଆଗରେ ଫୁଟାଣି ମାରୁଥିଲା । କହୁଥିଲା—ଦେଖ, ମୁଁ କେତେ ପାଠ ପଢ଼ିଲିଣି । ତମକୁ ଯାହା ପଚାରିବି ଆସିବନା ? ପ୍ରଶ୍ନ ପରେ ପ୍ରଶ୍ନ ପଚାରି ସେ ବଡ଼ମାନଙ୍କୁ ପୋଡ଼ ପକାଉଥିଲା । ସେମାନେ ଜାଣିଶୁଣି ଭୁଲ୍ ଉତ୍ତର ଦେଉଥିଲେ । ଲିଟୁ ସେମାନଙ୍କ କଥା ଶୁଣି ହସି ହସି ଗଡ଼ ଯାଉଥିଲା । ତାଳମାରି ନାଚୁଥିଲା । ସେମାନଙ୍କୁ ଠଟ୍ଟା କରୁଥିଲା ।

ଲିଟୁର ବାପା ଦେବ ଦାଶ ଥିଲେ ଜଣେ କଲେଜ ମାଷ୍ଟର, ଅଧ୍ୟାପକ ଏବଂ ମା (କହିବାକୁ ଉଚିତ ମଣୁଚି ଯେ, ଲିଟୁ ତା'ର ଜନ୍ମକଲା ନାରୀଟିକୁ ମା'; ତା'ର ଜେଜିମା, ଆଈ ଏବଂ ଅଜାଙ୍କୁ ବୋଉ ଏବଂ ବାପା ବୋଲି ଡାକେ । ଜେଜିମା'ଙ୍କୁ ଡାକେ ବୃନ୍ଦପଲି ବୋଉ, ଆଈଙ୍କୁ ଡାକେ ବରି ବୋଉ ଏବଂ ଅଜାଙ୍କୁ ବରି ବାପା ।) ତା'ର ମା' ସଖି ଦାଶ ମଧ୍ୟ କଲେଜ ମାଷ୍ଟ୍ରାଣୀ, ଅଧ୍ୟାପିକା । ଏମାନଙ୍କ ମଧ୍ୟରୁ ଜଣେ ସରକାରି ଏବଂ ଆଉ ଜଣେ ବେସରକାରି । ଜଣେ ଏଠି ଥାଏ ତ ଆଉଜଣେ ଥାଏ ସେଠି । ଫଳତଃ ପିଲାଗୁଡ଼ାକ ନ ଥା'ନ୍ତି କୋଉଠି । ବିଭିନ୍ନ କାରଣରୁ ତା'ର ବାପା ମା' ହାଲକ ସାଧାରଣ ଭାଷାରେ ଏ "ପିଣ୍ଡା ଓଲୁ" ବୃତ୍ତିକୁ ଶ୍ରଦ୍ଧାର ସହ ସ୍ୱୀକାର କରି ନେଇଥିଲେ । ସବୁଠାରୁ ମଜାର କଥା ଦୁଇଜଣଯାକ ପଢ଼ିବା ଓ ଲେଖିବା ପରି ଓଥର କାମକୁ ମଧ୍ୟ ଆଦରି ନେଇଥିଲେ ଏବଂ ସେଥିରେ କାଳେ ପଦବି ପୁଲକ ମିଳେ ବୋଲି ଅଲଜୁକଙ୍କ ପରି ଘୋଷଣା କରୁଥିଲେ ।

ହନେ ଛ' ବର୍ଷିଆ ବୃହତ୍ ବାଳୁଙ୍ଗାଟିଏ ଏମିତି କୁଦାକୁଦି କଲା ଯେ, ମୁଁ ମୋ ଖୁଣ୍ଟମୂଳେ ମନ ଖୁସିରେ ପାକୁଳି କରିପାରିଲିନି । ମୋ ପାଟିଟା ତ ନିହାତି ଖରାପ । ମୁଣ୍ଡକୁ ପିତ୍ତ ଚଢ଼ିଗଲେ ଖାଣ୍ଟି ବୈଦିକ ଶବ୍ଦରେ

କଥାବାର୍ତ୍ତା କରେ । ପିତା, ମାତା, ପତ୍ନୀ, ପୁତ୍ରମାନେ ମଧ୍ୟ ମୋ ଦାଉରୁ ଆଉଡ଼ପଡ଼ନ୍ତି ନାହିଁ । ତଥାପି ସେଦିନ ଟିକିଏ ନରମଗଳାରେ ତାକୁ ପାଖକୁ ଡାକିଲି । କହିଲି—ବାପଧନ, ଆଜି ସକାଳପହରୁ ଏପର୍ଯ୍ୟନ୍ତ କ'ଣ କ'ଣ କରିଚ, ସେସବୁ କଥା ଟିକିଏ ଲେଖିଆଣିଲ । ଭଲ ଜିନିଷ ପାଇବ ।

ମୋ ଉଦ୍ରୋଚିତ ବ୍ୟବହାର ଦେଖି ସେ ପ୍ରଥମେ ଟିକିଏ ଚମକିପଡ଼ିଲା । କଥା ବୁଝିପାରିଲା ନାହିଁ ବୋଧହୁଏ । ପଚାରିଲା—କ'ଣ କ'ଣ ଲେଖିବି, ତମେ ମତେ ଆଗ କହିଦିଅ, ତା'ପରେ ଲେଖିଦେବି ।

ମୁଁ କହିଲି—ଦେଖ୍, ତୁ ଆଜି ସକାଳୁ ଏ ପର୍ଯ୍ୟନ୍ତ ଯାହା ଯାହା କରିଚୁ, ସବୁ କଥା ଗୋଟି ଗୋଟି କରି ଲେଖି ଆ୍ । କିଛି ଛାଡ଼ିବୁନି ।

ତାକୁ କାମ ବତେଇଦେଇ ପାକୁଳି ଆରମ୍ଭ କରିଚି କି ନାହିଁ, ସେ ଧାଇଁ ସାଇଁ ଲେଖାଟି ଧରି ମୋ ପାଖରେ ଠିଆ ହେଲା ।

ତା ହାତରୁ ଲେଖାଟି ଆଣି ପଢ଼ିଲି । ଲେଖା ଥିଲା—ଆଜି ବଡ଼ଭୋରୁ ଉଠିଲି । ଝାଡ଼ା ଗଲି । ଦାନ୍ତ ଘଷିଲି । ରୁଟିଦୁଧ ଖାଇଲି । ସଂଖ୍ୟା ପଣିକିଆ ଲେଖିଲି । ମିଶାଣ କଲି । ସାହିତ୍ୟ, ଅଙ୍କବହି ପଢ଼ିଲି । ଗାଧେଇଲି । ଖାଇଲି । ଇସ୍କୁଲ ଗଲି । ଇସ୍କୁଲରୁ ଫେରି ଖେଳିଲି । ସନ୍ଧ୍ୟାରେ ମା' ସାଙ୍ଗରେ ବସି ଫଳା ବୋଲିଲି । ପଢ଼ିଲି । ମା' ଖାଇବାକୁ ଦେଲା । ଖାଇସାରି ଶୋଇଲି ।

ତା' ଲେଖାଟି ହାତରେ ଧରି ବଡ଼ପାଟିରେ ପଢ଼ିଲି । ହସି ହସି ଗଡ଼ିଗଲି । ପଚାରିଲି—ହଇରେ ବାଳୁଙ୍ଗା, ତୁ ପରା ଏବେ ପଢ଼ୁଚୁ । ଖାଇଲୁ, ଆଉ ଶୋଇଲୁ କେତେବେଳେ ?

ମୋ କଥା ଶୁଣି ସେ ତା ମା'କୁ ଡାକ ପକେଇଲା ।

ରୋଷେଇଘରୁ ଶୁଭିଲା ସପ୍ତମ ପାଟି । ପାଟି ତ ନୁହେଁ, ମେଘ ଘଡ଼ଘଡ଼ି । (ତା' ଭୁଣ୍ଡର ଏଇ ଘଡ଼ଘଡ଼ି ନାଦ ପାଇଁ ମହାମହିମ ପରମ ଦୟାମୟ ଈଶ୍ୱରଙ୍କୁ ଦୋଷ ଦେଇ ଲାଭ ନାହିଁ । ବରଂ ସେ ଶତକୋଟି ଧନ୍ୟବାଦର ନାୟକ । ଏ ଦୁର୍ଲ୍ଲଭ ପାଟିର ସର୍ଜନା କଲାବେଳେ ସେ ଆପଣାର ଦିବ୍ୟ ଚକ୍ଷୁରେ ଦେଖିପାରିଥିଲେ ଆମ ଦମ୍ପତ୍ତି ଜୀବନର କଥା । ତେଣୁ ତା'ଠାରୁ ବହୁ ଦୂରରେ ଥାଇ ମଧ୍ୟ ମୁଁ ବେଶ୍ ନିର୍ବିଘ୍ନରେ ତା'ର ଡାକ ଶୁଣିପାରୁଥିଲି । ଭାଗ୍ୟ ନୁହଁ ତ ଆଉ କ'ଣ) କହିଲା—ହଇରେ, ପଢ଼ୁଚୁ ତ, ମିଆଉଁ ମିଆଉଁ କାହିଁକି ? ଯା' ମା'କୁ ଯେମିତି କିଏ ଠେକିନଉଚି ?

ସେ କାନ୍ଦୁ ଡରିବାର ଜନ୍ତୁ ନୁହଁ । ପ୍ରଚଣ୍ଡ ବିଜୁଳି ଆଉ ଘଡ଼ଘଡ଼ିକୁ ଖାତିର ନ କରି ସେ ଶୋଷେଇଘରକୁ ଧପାଇଗଲା । ବଡ଼ପାଟିରେ କହିଲା— ଦେଖିଲୁ ତ ମା' । ବାପା କେମିତି ମିଛ କଉଚନ୍ତି । କଉଚନ୍ତି—ମୁଁ ମିଛୁଆ । ମା'ଲୋ, ମୁଁ ପଢ଼ିସାରିଲା ପରେ ଖାଇବନି କି ? ଆଉ ଖାଇସାରିଲା ପରେ ଶୋଇବନି କି ?

ସଞ୍ଜ ଲୁଗାକାନିରେ ହାତ ପୋଛୁ ପୋଛୁ ମୋ ପାଖକୁ ଆସିଲା । ତା ପଛେ ପଛେ ଲିଟୁ । ମୋତେ ଟିକିଏ ଆକଟ କରି କହିଲା—ଆମ ଗୁଣମଣିଙ୍କି ତମେ ଏମିତି କ'ଣ କଉଛ ? ସେ କାଇଁକି ମିଛୁଆ ହବ ?

ମା'ର ସାହସ ପାଇ ସେ ପୁଣି କହିଲା—ମା'ଲୋ, ଆମ ବହିରେ ନାଇଁ—

'ସତ କହି ପଛେ ମଲେ ମରିବ,
ସତ କହିବାକୁ କଆଁ ଡରିବ' ?

ତୁ ପରି ଫଳା ବୋଲିଲାବେଳେ ମତେ ଏ କଥା ଶିଖେଇଥିଲୁ । ମୁଁ ସତୁଆ ଆଉ ବାପା ମିଛୁଆ ନୁହଁ ?

ଲିଟୁ ସେଦିନ ଜିତିଗଲା । ମୁଁ ହାରିଲି । ହାରିବାକୁ ଉଚିତ ମଣିଲି । ବାପାମାନେ ବୋଧହୁଏ ସବୁକାଳରେ ଆତ୍ମଜମାନଙ୍କ ନିକଟରୁ ପରାଜିତ ହେବାକୁ ବାଧ ଏବଂ ସେଥିରେ ପୁଣି ସେମାନଙ୍କର ଗର୍ବ ଓ ଗଉରବ ।

ସେଦିନ ମୁଁ ତାକୁ କହିଥିଲି—ବାପାରେ, ତୁ ସବୁଦିନେ ଯାହା ଯାହା କରୁଚୁ, ସେସବୁକୁ ଲେଖିକି ରଖିବୁ । ମୁଁ ତାକୁ ଦେଖିକି ଜାଣିଦେବି, ତୁ କ'ଣ କରୁଚୁ । ଯାହାକୁ ଡାଇରି କହନ୍ତି । ବଡ଼ ବଡ଼ ଲୋକମାନେ ଡାଇରି ଲେଖନ୍ତି । ତୁ ତ ବଡ଼ ମଣିଷ ହବୁ । ବୋଉ କହୁ ନ ଥିଲା ? ଆମ ସମସ୍ତଙ୍କର ସୁନା ବାପା । ଲେଖିବୁ, କ'ଣ କହୁଚୁ ?

ହେଦିନ ସେ ମୁଣ୍ଡଟିଙ୍ଗାରି ହଁ କଲା ସିନା, ମାତ୍ର ଡାଇରି କିଏ, ସେ କିଏ ? ସେ ତ ମହା ଶଠ ଲିଟୁ ।

ମୁଁ ଯୋଉଦିନ ତା ପାଖରେ ଥାଏ, ଡାଇରି ଲେଖିବାକୁ କୁହେ । ସେ ଭାରି ଆଗ୍ରହର ସହିତ ଲେଖେ । ସବୁଦିନେ ସେଇ ସମାନ କଥା । ସକାଳୁ ଉଠିଲି, ଝାଡ଼ା ଗଲି, ଦାନ୍ତ ଘଷିଲି, ପଢ଼ିଲି, ସ୍କୁଲ ଗଲି ଇତ୍ୟାଦି ଇତ୍ୟାଦି ।

ପିଲାଟିଏ—ଜୀବନର ଗହନ କଥାମାନଙ୍କର କେମିତି ବା ଟେର୍ ପାଇବ ? କେମିତି ବା ସତ କଥାମାନଙ୍କୁ ଖୋଲିଦବ ? ଆମେ ବଡ଼ମାନେ ତ ସବୁଠାରୁ ବେଶୀ ଭୟକରୁ ସତକଥାକୁ । ସତକୁ ଘୋଡ଼େଇବାପାଇଁ ଜଗତଯାକର ଗାଲୁଆମି କରୁ । ଅନ୍ତ ଗୋପନ କଥାଗୁଡ଼ାକୁ କିଏ କ'ଣ କୋଉଦିନ ପ୍ରକାଶିଲାଣି । ପ୍ରକାଶିଦେଲେ ଇଜ୍ଜତମାନର ମରଣର ମାର୍ଗ ହୋଇଯିବ । ତେଣୁ ଲିଟୁ ନାମକ ବାଳକଟି ଅସଲ କଥାଗୁଡ଼ାକ ନ ଲେଖିଲା ବୋଲି, ତାକୁ ଜମାରୁ ଗାଳି ଦିଅ ନ ଥିଲେ । ତା' ଲେଖା ପଢ଼ି ହସି ହସି ଗଡ଼ ଯାଉଥିଲେ । ଅନ୍ୟମାନଙ୍କୁ ଶୁଣାଉଥିଲେ । ତା'ର ପ୍ରଶଂସା କରୁଥିଲେ । ସେ ବି ହସୁଥିଲା, ନାଚୁଥିଲା । ବିଚିତ୍ର ପୁଲକ ସଞ୍ଚରିତ ହେଉଥିଲା ତା'ର ପବିତ୍ର ଚେତନାରେ ।

ଲିଟୁ ସତକଥା ଲେଖିବାକୁ ଡରୁଥିଲା, କି ଲେଖି ଜାଣି ନ ଥିଲା, ସେ କଥା କହିବାକୁ ମୁଁ ଅସମର୍ଥ । ତେବେ ଏଇ ଗତ ପାଞ୍ଚ ଛ'ବର୍ଷ ଭିତରେ ସେ ମତେ ଅନେକ ପ୍ରଶ୍ନ ପଚାରିଚି । ପ୍ରଶ୍ନବାଣରେ ମୋତେ ପାଗଳ କରିଛି । ତା'ର ଅନୁସନ୍ଧିତ୍ସୁ ଚେତନାକୁ ବୁଝିବାଲାଗି ଅନେକ ଚେଷ୍ଟା କରିଛି । ଆଶ୍ଚର୍ଯ୍ୟ ହୋଇଛି । ପ୍ରଶ୍ନର ଜୀବନ ନାଟିକୁ ବୁଝିଛି । ମାତ୍ର କାର୍ଯ୍ୟରେ ସେଗୁଡ଼ିକୁ ପ୍ରୟୋଗ କରିପାରିନି । ତା ପାଖରେ, ସମାଜ ପାଖରେ, ସମସ୍ତ ଓ ନିଜ ପାଖରେ ବଡ଼ି ଦୟନୀୟ ଭାବରେ ହାରିଯାଇଛି ।

ତେବେ ମୋ ବନ୍ଧୁସ୍ଥ ମନଦେଇ ତାକୁ ଯେମିତି ଦେଖିଛି, ଅନୁଭବ କରିଛି—ଏ ଡାଇରିର ପୃଷ୍ଠାଗୁଡ଼ିକ ତାହାର ଏକ ଅନୁଲିପି । ସତ କହିବାକୁ ଡରୁ ନ ଥିବା ବାଳୁଙ୍ଗା ଗୌତମ ଲେଖିବାର କଳା ଜାଣିଥିଲେ, ବୋଧହୁଏ ଏମିତି ହିଁ ଲେଖିଥା'ନ୍ତା । ମୋର ବିଶ୍ୱାସ—ଜୀବନ ଓ ଜଗତକୁ ଅନୁଭବ କରିବାର ବୟସରେ ସେ ଯେତେବେଳେ ପାଦ ଥୋଇବ, ମୋର ପରି ହବ, ତା' ନାଁରେ ଲେଖା ଯାଇଥିବା ଡାଇରିର ପୃଷ୍ଠା ଲେଉଟେଇବ, ପେଟ ଫଟେଇ ହସିବ । ମୋର ବୋହୂ ଆଗରେ ବାପାଙ୍କ ଛତରମିର କଥା କହିବ । ବୋହୂ ବି ତାକୁ ଉଦେଇବ ଏବଂ ଆମେ ଦୁହେଁ ବଞ୍ଚିଥିଲେ ସାନ ଲିଟୁମାନଙ୍କ ଆଗରେ ପଛଦିନର କଥା କହି ପୁଲକିତ ହେବୁ । ମଣିଷ ଡାଇରି ଲେଖେ ତ ଖାସ୍ ସେଇଥିପାଇଁ । ଅତୀତ ଓ ଭବିଷ୍ୟତ ସହିତ ବର୍ତ୍ତମାନକୁ ମିଶେଇବା ପାଇଁ—ହସିବା ଓ କାନ୍ଦିବାପାଇଁ ।

ତେଣୁ ଏ "ଗୌତମର ଡାଇରି" ଗୌତମ ଲେଖିନି । ଲେଖିଛି ଦେବ ଦାଶ । ଭବିଷ୍ୟତରେ ତା' ନିକଟରୁ ପରାଜିତ ହେବାର ପ୍ରତ୍ୟାଶାରେ ପୁଲକିତ ହେଉଥିବା ଏକ ବିମୂଢ଼ ବାପା ।

॥ ଏକ ॥

ଡାଇରି :

ସକାଳେ ମୋ ନିଦ ଭାଙ୍ଗିଲା । ମୁଁ ମା' କୋଳରେ ଶୋଇଥିଲି । ଦେଖିଲି—ବାପା ଯାଇ ଟେବୁଲ ପାଖରେ । ପାଠପଢ଼ା । କେମିତିଆ ବାପା କେଜାଣି ? ଏଡ଼େ ବଡ଼ ମଣିଷଟାଏ ହୋଇ ପିଲାଙ୍କ ପରି ପାଠ ପଢ଼ୁଛନ୍ତି । ଯେମିତି ଆଗରେ ପରୀକ୍ଷା । ମା' ତ ଶୋଇଥିଲା । ତା' ଦି' ଦେଖାଯାଉଥିଲା । ସାଙ୍ଗେ ସାଙ୍ଗେ ଖାଇବା ଆରମ୍ଭ କରିଦେଲି । ତା ନିଦ ଚଟ୍‌କିନା ଭାଙ୍ଗିଗଲା । ମତେ ଦୂରକୁ ଠେଲିଦେଇ ଦି'ରେ ଲୁଗା ଘୋଡ଼େଇ ପକେଇଲା । ରାଗିଯାଇ କହିଲା—ବୁଢ଼ା ହେଲଣି, କେମିତି ଉଡିଆଣି କୁଆଙ୍କ ପରି ହଉଚି ।

ତା'ର ସବୁଦିନେ ସେଇ କଥା । ମତେ ଶୁଣିବାପାଇଁ ଭାରି ମଜା-ଲାଗେ । ସେ ଯେମିତି ଆଖି ବୁଜିଛି—ସାଙ୍ଗେ ସାଙ୍ଗେ ତା ଉପରେ ଆକ୍ରମଣ ଆରମ୍ଭ କରିଦେଲି । ଏଥର ସେ ମତେ ଠାଏକିନା ଚଟକଣାଟାଏ ମାଇଲା । ବାପାଙ୍କୁ କହିଲା—ଦେଖିଲ, ତମ ଗୁଣବନ୍ତ ପୁଅ କେମିତି ଦୁଷ୍ଟ ହେଉଛି । ପିଲା ହେଇଯାଉଛି । ମୁଁ ତାକୁ ଆଉ ପାରିବିନି । ବାପା ମୋ ଉପରେ ରାଗିଯାଇ କହିଲେ—କ'ଣ କରୁଛୁ ଆରେ । ଶୋଉଚୁ ନା ନାହିଁ । ତାଙ୍କ କଥା ଶୁଣି ମୁଁ ପୁଣି ମା' ଉପରେ ଚଢ଼ଉ ଆରମ୍ଭ କରିଦେଲି ।

ମା' 'ହେଇଏକ୍' କହି ମତେ ଠେଲିଦେଲା ।

ବାପା ପଢ଼ା ଛାଡ଼ିଦେଇ ପୁଣି ଆସି ମା' ପାଖରେ ଶୋଇପଡ଼ିଲେ । ମୁଁ ଖଟ୍‌କିନା ମା'କୁ ଡେଇଁପଡ଼ି ସେମାନଙ୍କ ମଝିରେ ଶୋଇପଡ଼ିଲି । ସେମାନଙ୍କ ମଝିରେ ଶୋଇପଡ଼ିଲେ ମତେ ଭାରି ଭଲଲାଗେ ।

ବାପା ମତେ ତାଙ୍କ ବାଁ ହାତ ଉପରେ ଶୁଆଇପକେଇ କହିଲେ—ବାପା, ତୁ ପରା ବଡ଼ ହୋଇଗଲୁଣି । ବଡ଼ ପିଲାମାନେ କ'ଣ ଦୁଷ୍ଟ ହ'ନ୍ତି, ଦି' ଖାନ୍ତି ?

ମୁଁ ତାଙ୍କୁ କହିଲି--କୋଉଠି, ମୁଁ ତ ଛୋଟ ପିଲା ।

ବାପା ମୋ କଥା ଶୁଣି ହସିଲେ । କହିଲେ—ହଉ ଥାଉ, ବଦମାସି ବନ୍ଦ କର । ତତେ ଯେ ଯୋଉ ଗୀତଟା ଶିଖେଇଥିଲି, ବୋଲିଲୁ ।

ମୁଁ ଟିକିଏ ଅଳସ ଭାଙ୍ଗିଲି । ବାପା ପୁଣି ଗେହ୍ଲା କଲେ । ମା' କହିଲେ, ଆରେ ବୋଲୁନୁ, ସେମିତି କ'ଣ ହଉଚୁ ? ଦେଖିବୁ ଏଇକ୍ଷିଣା । ଅତି ହେଇଯାଉଚି । ମୁଁ ବୋଲିଲି—

କମଳଲୋଚନ ଶିଖିଧର
ନରେଣ ଶଙ୍ଖଚକ୍ରଧାରୀ ।।
ଖଗଆସନେ ଖଗପତି
ଖଟେନ୍ତି ଲକ୍ଷ୍ମୀ ସରସ୍ୱତୀ ।।
ଗରୁଡ଼ର ଆସନେ ମୁରାରୀ
ଗୋପରେ ରଖିଲେ ଦୃଷ୍ଟି ।।

ଗୀତ ଶୁଣି ମା' ମୋ ଉପରେ ରାଗି ଚୁର୍ ହେଇଗଲା । କହିଲା—ଭଲ କରି ବୋଲ । ମୁଁ କହିଲି—ବାପା ତ ମତେ ଶିଖେଇଚନ୍ତି । ମୁଁ କ'ଣ ଭୁଲ୍ ବୋଲିଲି ? ବାପା କହିଲେ—ହଉ, ଏଥର ଭଲକରି ବୋଲ । ମୁଁ ତାଙ୍କ କଥା ମାନିଲି ।

ଗୀତ ବୋଲା ପରେ ବାପା ଇଂରାଜୀ ଶବ୍ଦ ଘୋଷେଇଲେ । ଆଗରୁ ଶିଖେଇଥିବା ଶବ୍ଦଗୁଡ଼ାକର ମାନେ ପଚାରିଲେ । ମୁଁ କହିଲି । ତା'ପରେ କହିଲେ—କହ "ମା' ମତେ ଶୁଭ ବୁଦ୍ଧି ଦିଅ, ସତ କହିବାକୁ ଶିଖାଅ, ବଡ଼ ମଣିଷ କର, ମୁଁ ତମକୁ ପ୍ରାର୍ଥନା କରୁଛି ।

ଠାକୁରଙ୍କୁ ମୁଁ ବି ସେମିତି ଡାକିଲି । ତା'ପରେ ବାପା ମତେ ଚୁମା ଦେଲେ । ମା' ବି ଚୁମା ଦେଲା । ବାପା ମତେ ଚୁମା ଦେଲାବେଳେ ଖୁବ ଭଲ ଲାଗେ । ମୁଁ ବି ତାଙ୍କୁ ଚୁମା ଦେଲି । ମା' ମାରିଥିଲା ବୋଲି ତାକୁ ଦେଲିନି । ସେ ମତେ ନ ଚାହିଁ କଡ଼ ବୁଲେଇ ଶୋଇପଡ଼ିଲା । ରାଗିଲା, ମନ ଦୁଃଖ କଲା । ମୁଁ ମଝିରୁ ତା' ପଟକୁ ଉଠିଗଲି ଏବଂ ପୁଣି ତାକୁ ଗେଲ କଲି ।

ମା' ଏଥର ଉଠିଲା । ସବୁଦିନେ ସେ ଅନ୍ଧାରଆରୁ ଉଠେ । ମୁଁ ବି ତା' ପଛେ ପଛେ ଉଠିଲି । ସେ ନିଜେ ମୁହଁ ଧୋଇ, ମୋ ମୁହଁ ଧୋଇଦେଲା । ତା' କାନିରେ ମୁହଁ ପୋଛିଦେଲା । ମା' ଦାଣ୍ଡଦୁଆର ଖୋଲି ତା କାମ କଲା ।

ମୁଁ ପାଇଖାନାକୁ ଯାଉଥା ଗଲି । ସେ ମତେ ଧୋଇଧାଇ ଦେଲା । ମୁଁ ଦାନ୍ତ ଘଷିଲି । ସେ ଜିଭ ଚ଼େଛେଲେଇଦେଲା । କୁଳ୍‌କୁଳି କରେଇଲା । ଦୁଆରପିଣ୍ଡାରେ ଆସନ ପକେଇଦେଲା । ମୁଁ ବସିଲି । ବାପା ବ ସେତେବେଳକୁ ଆରାମ ଚେୟାର ଉପରେ ବସିଲେଣି ।

ମା ମୋତେ ରୁଟି, ଗରମ ଦୁଧ, ବାସି ତରକାରୀ ଆଣିଦେଲା । ବାପାଙ୍କ ହାତକୁ ଚା' ବଢ଼େଇଦେଲା । କଂସା ବାସନ ମାଜିବାକୁ ଚାଲିଗଲା ।

ମୁଁ ତାକୁ କହିଲି—ଏ ମା' ମତେ ଖୁଆଇଦେଏନା ।

ସେ ମୋ ଉପରେ ଚିଡ଼ିଲା ଆଉ ଧମକଦେଇ କହିଲା—ଭଲରେ ଭଲରେ ଖାଆ । ମୁଁ ପାରିବିନି । ବୁଢ଼ା ହବାଯାଏ ମୁଁ ଖାଲି ଯୁଆଁକୁ ଗେଲେଇ-ଦଉଥିବି । ଅଡି ହେଇଯାଉଚି । ମନକୁ ମନ ଦ' ଖାଉଚି ।

ମୁଁ କହିଲି—କୋଉଟି, ମୁଁ ପରା ପିଲାଟାଏ । ତୁ ଖୁଆଇଦେ, ନଇଲେ କାନ୍ଦିବି ।

ମା କହିଲା—ତୁ ଖାଉଥା । ମୁଁ ସବୁ କାମ ସାରେ ।

ମୁଁ ଆଉ ଖାଇଲିନି । ସେମିତି ବସିରହିଲି । ସେ ତା କାମ ସାରି ମତେ ଆସି ଖୁଆଇଦେଲା । ଖାଇସାରିଲା ପରେ ମୋ ମୁହଁ ଧୋଇଦେଲା । କାନରେ ପୋଛିପାଛିଦେଇ କହିଲା—ଯା' ଏଥର ପଢ଼ । ଖାଇସାରିଲୁତ, ଆଉ କ'ଣ କରିବୁ ? ଖେଳ, ଆଏଁ ।

ମା'ଟା ଏମିତି ଯେ, ଖାଇସାରିଲା ପରେ ମତେ ଜମାରୁ ବସେଇ-ଦବନି । ଖାଲି ପାଠ । ମୁଁ ବହି ପଢ଼ିଲେ କହିବ—ଅଙ୍କ କର । ଅଙ୍କ କରିସାରିଲେ କହିବ—ଲେଖ । ପଢ଼ିବି ତ, ଆଉ ଗୋଟାଏ ଲେଖିବି କ'ଣ ? ତା କଥା ନ ମାନିଲେ ଖାଲି ମାଡ଼ ।

ବାପା ଥିଲେ ମୋର ଭାରି ମଜା । ମତେ ଖାଲି ପଢ଼ିବାକୁ କହିବେ । ଗପ କହିବେ, ତା'ପରେ ଯାଇ ଲେଖେଇବେ । ସେ ଯଦି ରାଗିଯିବେ ନା, ମାରି ମାରି ପିଠି ଫଟେଇଦେବେ । ବାବାରେ, କେତେ ରାଗୀ !

ମୁଁ ଆସି ବାପାଙ୍କ ପାଖରେ ବସିଲି । ସିଲଟଖଡ଼ି ବାହାର କରି ସଂଖ୍ୟା, ପଣିକିଆ ଲେଖିଲି । ଡାକିଲି । ସେତେବେଳକୁ ବାପା ଯାଉଥାଯିବା, ଦାନ୍ତଘଷା କାମ ସାରି ପୁଣି ଚା' ଖାଉଥା'ନ୍ତି । ଚେୟାର ଉପରେ ବସି ବହିଟାଏ ପଢୁଥା'ନ୍ତି । ବାପା ତ ବଡ଼ ହେଇଗଲେଣି । କାଇଁକି ସବୁବେଳେ

ବସି ପଢ଼ୁଛନ୍ତି କେଜାଣି ? ତାଙ୍କ ଦେଖାଦେଖି ମା'ଙ୍କ ବି ପଢ଼ୁଚି । ଦୁଇଜଣ-ଯାକଙ୍କର ଖାଲି ପଢ଼ା ଆଉ ଲେଖା ।

ମୁଁ ବାପାଙ୍କୁ ପଚାରିଲି—ବାପା, ତମେ ସବୁବେଳେ ଖାଲି କାଇଁ ପଢ଼ୁଚ, ଲେଖୁଚ ' ମା' ବି ସେମିତି । ଜେଜେ କଉ ନ ଥିଲେ---ପଢ଼ି ପଢ଼ି ତମ ଆଖି ଖରାପ ହୋଇଚି ବୋଲି ? ମା' ଆଖିରେ ଚଷମା ଦଉଚି । ତମେ ବି ଦଉଚ । ତମ ଚଷମା କାଚ କେଡ଼େ ମୋଟା । ମତେ ସେମିତି ପଢ଼ଉଥା । ଚଷମା ଦେବ ଯେ । ମୋ ପାଇଁ ଗୋଟାଏ ଆଣିଦଉନ । ମା' ଚଷମା ପିନ୍ଧିଲା-ବେଳକୁ ଗାଲ ଦଉଚି ; ତମ ଚଷମା ପିନ୍ଧିଲେ ତ କଣ୍ଟ ଦେଖାଯାଉନ । ବାପା, ତମେ ଜାଣିଚ ନା, ମେଙ୍କିର ବାପା ମା ବୁଢ଼ାଗଲାବେଳେ ବଡ଼ ବଡ଼ ଚଷମା ପିନ୍ଧନ୍ତି । ତାଙ୍କ ଆଖିକୁ ଭାରି ବଡ଼ିଆ ଦିଶେ । ଆଚ୍ଛା ବାପା—ମାମୁ, ବଡ଼ବାପା, ବଡ଼ବୋଉ, ଦାଦା, ମେଙ୍କି ବାପା, ତା' ବୋଉ, ଜେଜେ, ମା', ବୁଗୁଲୁ, ମୁଲୁ, ମାମିନା, ଏମାନେ କେହି ପଢ଼ୁନାହାନ୍ତି । ତମେ କାହିଁକି ସବୁବେଳେ ବହିଟା ଧରି ବସୁଚ, ଲେଖୁଚ ?

ବାପା ହସିଲେ । କହିଲେ---ମୁଁ, ତୋ ମା' ଆଉ ପିଲାମାନଙ୍କୁ ପଢ଼ଉଚୁ । ନ ପଢ଼ିଲେ ଚଳେଇବୁ କେମିତି ? ପଢ଼ିଲେ ସିନା ବହୁତ କଥା ଜାଣିବୁ । ବଡ଼ ମଣିଷ ହବୁ । ନ ପଢ଼ିଲେ ହବୁ ଗଧ ।

'ହଁ, ମିଛୁଆ, ତମେ କ'ଣ ଏକା ପଢ଼ଉଚ । ମେଙ୍କି ବାପା, ମାମିମା ବାପା, ଟୁଗୁଲୁ ବାପା ସମସ୍ତେ ତ କଲେଜ ଯାଉଚନ୍ତି । ପଢ଼ଉଚନ୍ତି । ସମସ୍ତେ ଖେଳୁଚନ୍ତି । ବୁଲୁଚନ୍ତି । ଯୁଆଙ୍କର ଖାଲି ପଢ଼ା । ଛଥା । ମୁଁ ତ କାହାକୁ ପଢ଼ଉନ । ପଢ଼ିବ କାଇଁକି ? ତମେ ତ କଉଚ---ମୁଁ ବଡ଼ ହୋଇଗଲିଣି । ମୁଁ ତ ତମ ବାପା । ମତେ ଏଗୁଡ଼ା ସବୁ ଭଲ ଲାଗୁନ ।

ବାପା କହିଲେ—ତୁ ଯେତେ ପଢ଼ିବୁ, ସେତେ ବଡ଼ ହବୁ । ପାଠ ପଢ଼ାରେ ମୋତେ, ତୋର ସାଙ୍ଗମାନଙ୍କୁ ହରେଇଦବୁ । ତତେ ସମସ୍ତେ ଭଲ ପିଲା କହିବେ । ଭଲ ପାଇବେ ।

ବାପା ପଢ଼ଉଥିଲାବେଳେ ମେଙ୍କି ଆସି ମୋ ପାଖରେ ବସିଲା । ମୋ କାନରେ ଚୁପ୍ ଚୁପ୍ କହିଲା—ଲିଟୁ, ଖେଳିବା ଆ । ହେଲେ ମା'ଟା କୋଉଠି ଥିଲା କେଜାଣି ଧାଇଁ ଧାଇଁ ଆସି ବାପାଙ୍କ ପାଖରେ ଠିଆ ହୋଇପଡ଼ିଲା ।

କହିଲି—ମେଙ୍କି ମା' ତୁ ଯା'। କିନ୍ତୁ ପଢ଼ିସାରୁ, ଆଉ ଟିକଏ ପରେ ଆସିବୁ। ତା'ପରେ ଖେଳିବା।

ମା'ଙ୍କୁ ପାଖରେ ଦେଖି ମୁଁ ମେଙ୍କି ଉପରେ ରାଗିଗଲି। ତାକୁ ଠେଲିଦେଇ କହିଲି—ତୁ ଯା। ମୁଁ ପଢ଼ିସାରିନି। ଆସି ଡିଷ୍ଟର୍ବ କରୁଛ। ପରେ ଆସିବୁ। ଛପି ଛପି ତା' ହାତରେ ଚକ୍ ଖଣ୍ଡେ ଧରେଇଦେଲି। ସେ ଚାଲିଗଲା।

ମେଙ୍କି ଆମ ଘରକୁ ଆସିଲା ମାନେ ମୋର ଆଉ ପଢ଼ିବାକୁ ଜମାରୁ ଇଚ୍ଛା ହୁଏନା। ତା'ର ମୋର ଖୁବ ଭଲ। ମାମିନା, ଯାମିନୀ, ହନି, ପୁକୁନି, ଟୁଗୁଲି, ଏମାନେ ଖୁବ ଖରାପ। ମେଙ୍କି କେଡ଼େ ବଢ଼ିଆ। ତା' ବାପା ମା କେଡ଼େ ବଢ଼ିଆ, ସୁନ୍ଦର। ସେ କେତେ ଗୋରା। କେତେ ସୁନ୍ଦରିଆ ସୁନ୍ଦରିଆ ଜାମା ପେଣ୍ଟେ ପିନ୍ଧେ। ମାମିନା, ଯାମିନୀ ସବୁବେଳେ ତାକୁ ଖାଲି ମାରିବେ। ତା' ଜାମାରେ ଧୂଳି ବୋଳିବେ। ସିଙ୍ଘାଣି ନଗେଇବେ। ନାସେମୀଗୁଡ଼ାକ। ସମସ୍ତେ ତା' ସାଙ୍ଗରେ କଟି ପକେଇଛନ୍ତି। ମେଙ୍କି କଉଥିଲି—ତା' ବାପା ମା'ଙ୍କ ସାଙ୍ଗରେ ସେମାନଙ୍କର ବାପା ମା'ଙ୍କର କଳି ହେଇଛି। ସେମାନଙ୍କର ବାପା ବୋଉ ମନା କରିଛନ୍ତି ତା' ସାଙ୍ଗରେ ଖେଳିବାପାଇଁ। ମେଙ୍କି କଇଛି—ଲିଟୁ, ତୁ ତାଙ୍କ ସାଙ୍ଗରେ କଟି ପକେଇଦେ। କେବଳ ମୋରି ସାଙ୍ଗରେ ଖେଳେ। ସେମାନଙ୍କର ବାପା ମା'ତ ଆମ ଘରକୁ ଆସୁଚନ୍ତି। ସେମାନେ କ'ଣ ଆମ ସାଙ୍ଗରେ କଳି କରିଚନ୍ତି କି ? ମୁଁ କାହିଁକି ତାଙ୍କ ସାଙ୍ଗରେ ଅପଡ଼ ହେବି ? ସମସ୍ତେ ଭଲ। ସମସ୍ତଙ୍କ ଠୁଇ ମେଙ୍କି ଆଉରି ଭଲ। ଆମେ ଦୁଇଜଣ ଖୁବ ସାଙ୍ଗ।

ମେଙ୍କି ଚାଲିଗଲା ପରେ ଦେଖିଲି—ବାପା ବସି ପଢ଼ୁଚନ୍ତି। କୁଆଡ଼କୁ ଚାହୁଁ ନାହାନ୍ତି। ମା' ଯାଇ ରୋଷେଇଘରେ। ମେଙ୍କି ଗଲାବେଳେ ମତେ ଦୁଇଖଣ୍ଡ କାଗଜ ଦେଇ ଯାଇଥିଲା—ହନିମୁନ୍‌, ଡଙ୍ଗା କରିବାପାଇଁ। ମୁଁ କାଗଜ ଚିରି ଡଙ୍ଗା ତିଆରି କଲି। ହନିମୁନ୍ କରୁଚି—ମା' ଆସି ହାଜର। କହିଲା—ହଇରେ ପଢ଼ୁଚୁ ନା ହନିମୁନ୍ କରୁଚୁ ? କାଗଜ ଚିରା ହେଇ ଏଇଯାଏ ହଉଚି। ଦେଖିବୁ। ମାଡ଼ ଭୟରେ କାଗଜକୁ ମୁଁ ବେଗ୍ ଭିତରେ ରଖିଦେଲି।

ମା' ବାପାଙ୍କ ଉପରେ ରାଗିଯାଇ କହିଲା—ଏମିତିଆ ମଣିଷ ଯେ, ପିଲାଟା ପଢ଼ିଲା କି ନାହିଁ, ଜମାରୁ ଆଖି ଦେବେନି। ତମେ ଏଥର ତମ

ପୁଅଲୁ ମନ୍ନାଳ । ମୁଁ ମାରବନି । ସ୍ୟାଙ୍କ ଯୋଗୁଁ ସେଲଣ୍ଟା ମୂର୍ଖ ହେବ । ଟ୍ୟୁଷେନ୍ କରିବ, ତାକୁ ପଢ଼େଇବ, କଲେଜ ନବ । ଟର୍ମିନାଲ ଆଉ କ୍ଲାସ୍ ପ୍ରିପେଆରେସନ୍ । ଏଣେ ସ୍ୟାଙ୍କ ଚିନ୍ତା । ମଣିଷ ନା ଯନ୍ତ୍ର ? ମରଯା'ନ୍ତୁ କ, ଦେଖନ୍ତୁ, ମଜା ପାଆନ୍ତୁ ।

ବାପା ରାଗିଯାଇ କହିଲେ - ତମକୁ କିଏ କହୁଚି ଏତେ କାମ କରିବାପାଇଁ । ମୁଁ କେବେ କଇଚି ? ସବୁବେଳେ ଖାଲି ବେକାରଟାରେ ବକ୍ ବକ୍ ହଉଚ ।

ବାପା ରାଗିଗଲେ ମା ଆଉ କିଛି କହେନା । ସେମାନେ ସବୁବେଳେ ଖାଲି ଏଇ କଥା କହି ମାଟି କରନ୍ତି । ତା'ପରେ ମାଡ଼ ବର୍ଷେ ମୋ ଉପରେ । ବାପା ରାଗିଯାଇ ମତେ ଯୋଉ ପାଠ ପଚାରନ୍ତି, କିଛି କହିପାରେନା । କିଛି ବି କିଛି ମନେ ପଡ଼େନା । ସବୁ ଏକାବେଳକେ ଭୁଲିଯାଏ । ବଲ ବଲ କରି ତାଙ୍କ ମୁହଁକୁ ଚାହେଁ । ସେ ମାରନ୍ତି । ବାଳ ଧରି ଝିଙ୍କନ୍ତି । କାନ ମୋଡ଼ି ଗାଲରେ ଠାଏ ଠାଏ ଚାପୁଡ଼ା ବସେଇଦିଅନ୍ତି । ପିଠିରେ ଗୁମ୍ ଗୁମ୍ କରି ବିଧା କଷିଦିଅନ୍ତି । ହାତରେ ସ୍କେଲ୍, ବାଡ଼ି ଯାହା ମିଳିଲା କଷିଦିଅନ୍ତି । ମତେ ଘାରି କାନ୍ଦେ । ମୁଁ କାନ୍ଦେ । ଯେତେ ବେଶୀ କାନ୍ଦେ ସେ ସେତେ ବେଶୀ ମାରନ୍ତି । ଖାଲି କହିବେ- -କାନ୍ଦ ବନ୍ଦ କର, ନଇଲେ ମୁଣ୍ଡ ଚଢ଼େଇଵ । କେମିତିଆ ବାପା କେଜାଣି ? ଏତେ ଜୋର୍‌ରେ ମାରିବେ । କାନ୍ଦିବ, ଆଉ କାନ୍ଦିବନି । ମାରିଲେ କାନ୍ଦେ ବୋଲି ବଡ଼ମାନେ କ'ଣ ଏତିକ ଜାଣିପାରନ୍ତିନି ? ବାପା ମତେ ଛେଚୁଥିଲାବେଳେ ମା' ତାଙ୍କ ଆଗରୁ ଚାଲିଯାଇ ନୁଚି ନୁଚି କାନ୍ଦେ ମତେ ଟେକିନେଇ ପୋଛିପାଛି ଦିଏ । ବେଳେ ବେଳେ କହେ—ଖା, କଥା ନ ମାନିଲେ ଖାଇବୁ । କିଏ କ'ଣ କରିବ ? ମାଡ଼ ଖାଇ ଖାଇ ମରିଯିବୁ ଯେ । ମତେ ବାଡ଼େଇସାରିଲା ପରେ ବାପା ଆଉ ପଢ଼ାନ୍ତିନି କି ନିଜେ ବି ପଢ଼ନ୍ତିନି । ସେତେବେଳେ ପାଠ ଆଉ ତାଙ୍କର ମନେ ରହେନା ବୋଧହୁଏ । ଖାଲି ଚା' ପିଅନ୍ତି । ଟିକକ ପରେ ମତେ ବହି ରଖିଦବାକୁ କହନ୍ତି । କାଖାନ୍ତି । ଗେଲ କରନ୍ତି । ମୁଁ ରାଗିଯାଇ ତାଙ୍କୁ ମାରେ । ସେ ହସନ୍ତି ଆଉ କହନ୍ତି-- ହେଇ ଲିଟୁ ହସିଲାରେ । ମତେ କୁତୁ କୁତୁ କରନ୍ତି ।

ତାଙ୍କ କଥା ଶୁଣି ମୁଁ ହସେ । ସେ ମତେ କହନ୍ତି—ବାପା, ତୁ ପଢୁନୁ କାଇଁକି ? ପଢିଲେ କାଇଁକି ମାଡ଼ ଖା'ନ୍ତୁ କଇଲୁ ? ତୁ ପରା ସୁନାଟାଏ ବଡ଼ ପିଲା ହେଇଗଲୁଣି । ପଢିସାରି ଖେଳିବୁ । କିଏ ମନା କରୁଛି ?

ବାପା ଅଣ୍ଡା ହୋଇଗଲେ ମା' କହନ୍ତି—ତମେ ରାଗିଗଲେ ଏମିତି କାହିଁ ହଉଚ କେଜାଣି ? ତା'ପରେ ସେ ମୋ ପିଠିରୁ ମାଡ଼ ଚିହ୍ନ ବାପାଙ୍କୁ ଦେଖାଏ । ବାପା ତଳକୁ ମୁହଁ ପୋତନ୍ତି ।

ବାପା ମତେ ନ ମାରି ବହି ପଢ଼ିବାକୁ କହିଲେ । 'ମୋ ପାଠ' ବହି । ମୁଁ ଡଗ ଡଗ ହୋଇ ପଢ଼ିଗଲି । ତା'ପରେ ସେ ଲେଖିବାକୁ କହିଲେ । ମୁଁ ବହି ବନ୍ଦ କଲି । ସେ ଡାକଲେ । ମୁଁ ଲେଖିଲି । ସେ ଡାକ ଯାଉଥିଲାବେଳେ ମୁଁ ତାଙ୍କୁ କହିଲି—ବାପା, ଏ ପାଠଗୁଡ଼ା ମୁଁ ଜମାରୁ ପଢ଼ିବିନି । ସବୁ ଭୁଲ୍ । ତମେ ଯେମିତି, ତମ ସାର୍‌ମାନେ ବି ସେମିତି । ମତେ ଆଗ ବୁଝା—କ'ରେ ହରସେଇକାର ଦେଲେ କି, ଦୀର୍ଘେଇକାର ଦେଲେ କୀ, ହରସୋଉକାର ଦେଲେ କୁ, ଦୀର୍ଘୋଉକାର ଦେଲେ କୂ । ପୁଣି ତାଲବେ ଶ, ଦନ୍ତେ ସ, ମୂର୍ଦ୍ଧନେ ଷ । ସବୁଗୁଡ଼ାକ ତ ସ । ଏତେ ସ କ'ଣ ପାଇଁ । ଏ ଭୁଲ୍ ପାଠଗୁଡ଼ାକ ମୁଁ ଜମାରୁ ପଢ଼ିବିନି । ମତେ ଆଗ ବୁଝାଅ । ତା'ପରେ ଲେଖିବି ।

ମୋ କଥା ଶୁଣି ବାପା ହସିଲେ । ମା' ବି ଘର ଭିତରୁ ପିଢ଼ାକୁ ଆସି ଆମ ପାଖରେ ଠିଆ ହେଲା । କହିଲା—ହେଇଚ—ତମ ପୁଅକୁ ଏବେ ବୁଝା । ମେଞ୍ଚଡ଼ ବକଟେ କ'ଣ କହୁ କି ? ପଚାରି ପଚାରି ତମ ମୁଣ୍ଡ ଖରାପ କରିଦେବ । ଏଇକ୍ଷିଣା ବନାନ ପଚାରିଲା ତ, ଯା'ପରେ ଶବ୍ଦର ଅର୍ଥ ପଚାରିବ । ତା' ଛବି ବହିରେ କାଉର ରଙ୍ଗ ନାଲି ହୋଇଯାଇଥିଲା ଯେ, ମତେ ପଚାରିଲା, ମା' ନାଲି କାଉ କ'ଣ ଅଛନ୍ତି ? ବାରକଥା ପଚାରି ମୁଣ୍ଡବ୍ୟଥା କରିବ, ତା'ପରେ ଯାଇ ଛାଡ଼ିବ । ତା' ସାଙ୍ଗରେ କିଏ ଏତେ ଚବର ଚବର ହବ କହିଲ ?

ବାପା ହସିଲେ । ମା'କୁ ଚାହିଁଲେ । ମତେ କୋଳକୁ ନେଇ କହିଲେ—ତୁ ବଡ଼ ହେଇଯା' ସବୁ ଜାଣିବୁ । ଉପର ଶ୍ରେଣୀରେ ପଢ଼ା ହବ । ଏଇକ୍ଷିଣା ବହିରେ ଯାହା ଯାହା ଲେଖା ହେଇଚି—ସେୟା ପଢ଼ । ଏ ପାଠ ବୁଝେଇଲେ ବି ତୁ ବୁଝିପାରିବୁନି ।

ତମେ ତ କହିଲ—ମୁଁ ବଡ଼ ହେଲାଣି । ଆଉ କେତେ ବଡ଼ ହେବି ? ତମେ ତ ବୁଝେଇପାରୁନ । ଛୀ, କି ଯେ ବାପା । ମା'ଲୋ ବାପା ନା—ଚୂର ମୂର୍ଖ । ତୁ ଯେମିତି ମତେ ଗାଳି ଦଉନା—ଗୋବର ଗଣେଶ । ବାପା ସେୟା ।

ବାପା ମୋ ଉପରେ ଟିକିଏ ରାଗିଯାଇ କହିଲେ----ବଦମାସ୍, ପଢ଼ୁରୁ ନା ନାହିଁ ! ଫେଚକାମି ବାହାର କରୁଛୁ । ଯାହା ଡାକୁଚି ଲେଖ । କଥା ପରେ ।

ମା' କହିଲା---ଆଉ ଆଜି ବହୁତ ପଢ଼ିଲାଣି । ଆଗ ଗାଧୋଉ । ଖାଇସାରି ପଢ଼ିବ । ଆ ।

ମା' ମୋ ଦେହରୁ ଜାମା ପେଣ୍ଟ ଓହ୍ଲେଇଦେଲା । ଭଲକରି ତେଲ ଘଷିଘାଷି ଦେଲା । ଦେହରୁ ମଳି ଛଡ଼େଇଦେଲା । କହିଲା—ଲୋଟ୍ଟା କେଡ଼େ ଗୋରା ଆଉ ବୋଉ କଉଚି କାଳିଆ । ବୋଉଟା ମିଛେଇ । ଯା ଏ ତଉଲିଆ ଦେଇ ଘଷିଘାଷି ଗାଧେଇପଡ଼ । ଗୋରା ହେଇଯିବୁ ।

ପାଣିକୁଣ୍ଡ ପାଖରେ ଥୁଆ ହେଇଥିବା ବାଲ୍‌ଟିରୁ ମୁଁ ପାଣି ଆଣି ଢାଳି ହେଲି । ଏତେ ଜୋର୍‌ରେ ଢାଳି ହେଲି ଯେ, ମା' ସ୍ୟାଁ ପାଟି କଲା । କହିଲା—ପାଣି ତ ମା' ଆଣୁଚି, ଢାଳି ହଉନୁ କାହିଁକି ? ଋ—-ଯାଉଚି । ଦାଇଟା ନ ଖାଇଲେ—ହବୁନ ।

ମା' କଥା ଶୁଣି ମୁଁ ଟୁବୁକିନା ପାଣିକୁଣ୍ଡରେ ପଶିଗଲି । କୁଣ୍ଡରେ ଖେଳିବାକୁ ମଜା ଲାଗେ । ତା'ର ଭିତରେ ବୁଡ଼େ, ଉଠେ । ମା' ଏ କଥା ଜାଣିପାରିଲା କି କ'ଣ, ଅଣ୍ଟାରେ ଲୁଗାଭିଡ଼ି ମୋ ପାଖକୁ ଆସିଲା । ମୋ ପିଠିରେ ଗୁମ୍‌କିନା ବିଧାଟାଏ କଷିଦେଲା । ମୁଁ ବି ତା' ଉପରକୁ ପାଣି ଫୋପାଡ଼ିଲି । ସେ ଡରିଗଲା । ଦୂରକୁ ଘୁଞ୍ଚିଗଲା । ହେଇରେ, ମା' ବଡ଼ ପିଲାଟା ଡରିଗଲା, ଡରିଗଲା ବୋଲି କହି ମୁଁ ତାକୁ ଚିଡ଼େଇଲି । ହେଲେ ସେ ଯେମିତି ବାଡ଼ିଖଣ୍ଡେ ଧରି ଆସିଚି ମୁଁ ସୁନାପିଲାଟି ପରି କୁଣ୍ଡରୁ ବାହାରି ତା ପାଖରେ ଠିଆ ହେଇଗଲି । ସେ ନଇଁପଡ଼ି ତଉଲିଆରେ ଯେମିତି ଘଷି ଦେଉଚି, ତା' ହା'କୁ କାମୁଡ଼ିଦେଲି ଆଉ ସେ ସାଙ୍ଗେ ସାଙ୍ଗେ ଠାଏକିନା ଚଟକଣାଟିଏ କସିଦେଲା । କହିଲା--—ଆଉ ଯଦି କେବେ ଏମିତି ବଦମାସି କରିବୁ, ଏଇ ବାଡ଼ିକି ଗୃହିଁଥା ।

ସେ ମତେ ଜୋର୍‌ରେ ଘଷିଲା । ମୁଁ ସୁନାପିଲାଟିଏ ପରି ଚୁପ୍‌ଚାପ୍ ଠିଆ ହେଲି । କହିଲି—ମା'ଲୋ ମା', ଘଷି ଘଷି ମତେ ପୂରା ଗୋରା କରିଦେ—ମେଙ୍କିପରି । ଗୋରା ହେଲେ ଖରି ଭଲ ଦେଖାଯାଏ, ନାହିଁଲୋ ମା । ତୁ କାହିଁକି ଗୋରା ହେଉନୁ । ମା'ଲୋ, ତୁ ତ ଗୋରା, ବାପା କାହିଁକି

ତତେ ଡାକିବେ କାଳିକାଣ୍ଟା । ବାପା ନା ସୁଉଦୁ ମିଚୁଆ । ଇଏ ଗୋରା ହବ, ମତେ କଳା କରିବ ।

ମା' କହିଲା—ତୁ ପରା ଗୋରା ପିଲାଟା ।

ହଁ, ବଡ଼ବୋଉ ମତେ କାଳିଆ ଡାକିବ, ମୁଁ ଗୋରା ହେଲି କେମିତି ?

ବୋଉଟା ସେମିତି କହେ ନା । ତୁ ପରା ତା' ବାପା ।

ମୁଁ ମା'ର ମୁହଁ ଉପରକୁ ଟେକିଧରି କହିଲି—ମୁଁ ତୋ ବାପା, ତୋ ବାପା, ମା'ର ବାପା, ବାପାଙ୍କ ମା' ବୃନ୍ଦାପଲା ବୋଉର ବି ବାପା । ମୁଁ କ'ଣ ସମସ୍ତଙ୍କ ବାପା ? ଛ୍ୟା, ମୁଁ ଆଉ ଏତେ ବାପା ହେଇପାରିବିନି ।

ମା ହସିଲା—ଗେଲ କଲା । କହିଲା—ତୁ ଖାଲି ବାପା ନୁହଁ, ସୁନା ବାପା ।

ତଉଲିଆ ନେଇପୁଛି ସେ ମୋ ଦେହରୁ ପାଣି ପୋଛିଦେଲା । ତଉଲିଆଟାକୁ ଅଣ୍ଟାରେ ଗଣ୍ଠି ପକେଇ ମତେ ପିନ୍ଧେଇଦେଲା । ମୁଁ ହାଣ୍ଡିଶାଳକୁ ଗଲି । ଗିଲାସରେ ବାଲ୍‌ଟିରୁ ପାଣି ଆଣି ଚଉରାମୂଳରେ ଥୋଇଲି । ଗଛରୁ ଗୋଟାଏ ଫୁଲ ଛିଣ୍ଡେଇଲି । ଚଉରାରେ ପାଣି, ଫୁଲ ଦେଲି । ତୁଳସୀଗଛ ମୂଳରୁ ମାଟି ଆଣି ମୁଣ୍ଡରେ ମାରିଲି । ନମସ୍କାର କଲି । ତୁଳସୀପତ୍ର ଆଣି ଖାଇଲି । ମା' ମତେ ଜାମା ପେଣ୍ଟ ପିନ୍ଧେଇଦେଲା । ଉପମା ଖୁଆଇଦେଲା । ବେଶ କରିଦେଲା । ମୁଁ ଟାଉଟାଉ ଖାଇଦେଇ ମେଙ୍କି ପାଖକୁ ବାହାରିପଡ଼ିଲି ।

ମେଙ୍କି ଆଉ ପିଙ୍କି ସେତେବେଳକୁ ଆମ ଦାଣ୍ଡଦୁଆର ମୁହଁରେ ବସି ଖେଳୁଥାନ୍ତି । ପିଙ୍କିଟା ସୁଉଦୁ ଥାକୁଲି । ପେଟଟା ପେଟରେ ବୋଝେ ଘୁଅ ପୂରେଇଛି । ସବୁବେଳେ ଖାଲି ଖାଉଥିବ, ହଗୁଥିବ । ସିଏ ବି ମତେ ଭଲ ଲାଗେ । ମା'ଟା କେମିତିଆ କେଜାଣି ? ପିଙ୍କି ପିରିକା ଝିଅଟାଏ ଆମ ଘରକୁ ଆଣୁନି । ମୁଁ ଯେତେ କହିଲେ ଜମାରୁ ଶୁଣୁନି ପରା । ଗଧୀଟା । ପିଙ୍କି ହଉଚି ମୋର ଆଉ ମେଙ୍କିର ଝିଅ ।

ଆମେ ଦୁଇଜଣ ପିଙ୍କିର ହାତ ଧରି ଘର ଭିତରକୁ ଆଣିଲୁ । ମା' ପିଙ୍କିକୁ ଦେଖି ଖୁସୀ ହେଲା । ତାକୁ କାଖେଇଲା । ତା' ହାତରେ ଦୁଇଖଣ୍ଡ

ବସ୍କୁଟ୍ ଦେଲା । ଆମେ ବ ଖଣ୍ଡେ ଖଣ୍ଡେ ପାଇଲୁ । ସେ ତାକୁ ଗେଲକରି ପିଣ୍ଡାରେ ବସେଇଲା । ମେର୍କି ଆଉ ମୁଁ ଦୁଆରେ ଯାଇ ଖେଳିଲୁ ।

ଦୁଆରର ଗୋଟାଏ କୋଣରେ ବାଲି ଥିଲା । ମେର୍କି କହିଲା—ଲିଟୁରେ, ଗୃଆଲେ ରୋଷେଇ କରିବା । ତା'ପରେ ଡଙ୍ଗା ଭସେଇବା ।

ମୁଁ କହିଲି—ଦେକ୍, ଝିଅପିଲାମାନେ ସିନା ରୋଷେଇ କରନ୍ତି । ମୁଁ ତ ପୁଅପିଲା । ମେର୍କି କହିଲା—ହଁ, ମୋ ବାପା ବ ତ ରୋଷେଇ କରନ୍ତି । ମା ବାପା ତ ସାଙ୍ଗ ହୋଇ କରନ୍ତି । ତୁ କାହିଁକି କରିବୁନି ।

ମୁଁ କହିଲି—ତୁଟା ମିଛେଇ । ମୋ ମା' ଥିଲାବେଳେ ବାପା ତ କେଣ୍ଟୁ କରନ୍ତିନି । ତୁ ଦେଖିବୁ ।

ମେର୍କି କହିଲା—ତୁଟା ମିଛୁଆ । ତୁ ତୋର କ'ଣ କରୁଚୁ କର । ମୁଁ ଯାଉଚି ।

ମେର୍କି ଯେମିତି ସିବାକଥା କହିଚି, ମୋର ମନ କ'ଣ ହୋଇଗଲା । ମୁଁ ତା' ହାତଧରି କହିଲି—ନାଇଁଲୋ ମେର୍କି, ସାଙ୍ଗ ହୋଇ କରିବା ।

ସେ କହିଲା—ଦେଖ୍, ମୁଁ ରାଗିଲେ କାହାରି ନୁହଁ ।

ତା' କଥା ଶୁଣି ମୁଁ ଡରିଗଲି । ରୋଷେଇଘର ଭିତରକୁ ଯାଇ ମା ପାଖରୁ ନଡ଼ିଆଶଢ଼େଇ ଆଣିଲି । ଆମେ ଦୁହେଁ ମିଶି ଚୁଲି କଲୁ । ଶଢ଼େଇରେ ପାଣି, ମାଟି, ବାଲି ପୂରେଇ ଭାତତରକାରି କଲୁ ।

ମେର୍କି ପୁଣି ମତେ କହିଲା—ଲିଟୁରେ, ତୁ ବାପା ହବୁ, ମୁଁ ମା' ହେବ । ପିଙ୍କି ଆମ ଝିଅ ହବ । ହବୁନା ? ବଢିଆ ଖେଳ ହବ । ନୁଅଁ ?

ମୁଁ ଭାରି ଖୁସୀ ହେଲି । ହଁ କହିଲି ।

ସେ କହିଲା—ଲିଟୁ, ତୁ ମତେ କ'ଣ ଡାକବୁ ?

ମୁଁ କହିଲି—ମୁଁ ଯେମିତି କହିବ, ହଇଓ ଶୁଭୁଚି ?

ତୁ ସାଙ୍ଗେ ସାଙ୍ଗେ କହିବୁ—"ଓ, ମତେ ଡାକିଲ ?"

ନା ବେ । ସେମିତି ନୁହଁ । ତୁ ମତେ ଡାକବୁ—ଏ ମେର୍କି, କ'ଣ କରୁଚ ? ଆଡ଼େ ଟିକିଏ ଆସତ ।

ମୁଁ କହିବ—ଯାଉଚି, ଟିକିଏ ରୁହ ।

ମୁଁ କହିଲି—ନା ବେ, ସେମିତି ନୁହଁ । ବାପା କ'ଣ ମା' ନାଁ ଧରି ଡାକନ୍ତି ?

ସେ ତ ମା'ଙ୍କୁ କହନ୍ତି—ହଇଓ ଶୁଭୁଚ, ୟାଡ଼େ ଟିକିଏ ଶୁଣ ତ ।

ମେଙ୍କି କହିଲା—ବାକ୍ ଭୁଟା ମୂର୍ଖ । କିଚ୍ଛୁ ଜାଣିନୁ । ମୋ ବାପା, ଚାନୁ, ପପୁନ ବାପାତ ତାଙ୍କ ମା'ଙ୍କ ନାଁ ଧରି ଡାକନ୍ତି । ବାପା ତ କହନ୍ତି—ଏ ଜୁଲି, ଆସତ । ଟିକିଏ ଚା' କର ତ, ତରକାରି ଆଣ ତ, କିଏ ଆସିଚି ଦେଖ ତ ? ମୁଁ କହିଲି—ଭୁଟା ଜାଣିନୁ । ବାପା ଡାକନ୍ତି—ହଇଓ ଶୁଭୁଚ । ମୋ ବଡ଼ବାପା ତ ବଡ଼ବୋଉକୁ ସେମିତି ଡାକନ୍ତି । ମୁଁ କାହିଁକି ତୋ ନାଁ ଧରି ଡାକିବି ?

ମୋ କଥା ଶୁଣି ମେଙ୍କି ଚିଡ଼ିଗଲା । କହିଲା—ହଉ ତୁ ଯଦି ମୋ ନାଁ ଧରି ନ ଡାକିବୁ, ମୁଁ ଯାଉଚି । ତୋର ଭୁ ଖେଳୁଥା । ତୋ ମାଆଁରେ କାଟି ପକେଇଦେବି । ମେଙ୍କି ଯେମିତି ଟ୍ରେଲ୍ପିବା ପାଇଁ ପିଙ୍କିକି ଧରିଚି, ମତେ ଭାରି ଖରାପ ଲାଗିଲା । କହିଲି—ନାହିଁଲେ ମେଙ୍କି, ତୋ ନାଁ ଧରି ଡାକିବି । ଖେଳିବା ଆ ।

ସେ ପିଙ୍କିକୁ ପାଖରେ ବସେଇଲା । ମେଙ୍କି କହିଲା—ମୁଁ ତତେ ଯାହା କହିବି, ତୁ ସେଇଆ କରିବୁ, ସେଇ କାମ କରିବୁ ।

ତୁ କହିବୁ—ଏ ମେଙ୍କି, ୟାଡ଼େ ଟିକିଏ ଆସତ ?

ମୁଁ କହିବି—ରୁହନ ଟିକେ, ଗାଧୋଉଚି ପରା, ଯାଉଚି ।

ତୁ କହିବୁ—ସ୍ୱେ ଶୀଘ୍ର ଗାଧୁଆ ସାରି ଭଲା । କ'ଣ ଏତେ ସମୟ କରୁଚ । ପିଙ୍କିକି ରଖ । କଲେଜ ଯିବା ପରା ।

ମୁଁ କହିବି—ଟିକିଏ ଧରିଥାଆନ । ଭଲକରି ଗାଧୋଇ ଦେବେନ । ସ୍ୱେ—ପାଣି ଫୁଟୁଥିବ । ଗୁଣ୍ଡିଲ ପକେଇ ଦିଅନ୍ତନ । ନ ହେଲେ ଗ୍ୟାସ୍ଟା କମେଇଦିଅ ।

ତୁ ବାପାଙ୍କ ପରି ଯେମିତି ପିଙ୍କିକୁ ଧରି ବସିଥିବୁ । ମୁଁ ଯେମିତି ଆସିବି, ତୁ ତାକୁ ଗୁଡ଼ିବୁ । ମୁଁ କହିବି, ସ୍ୱେ, କାଲି ଗଣେଶପୂଜା । ପିଙ୍କି-ପେଇଁ ଜାମା ପେଏଁଟେ ଆଣିବନ । ଦେଖ, ବଜାରରୁ ଗ୍ରେଟ ମୂର୍ତ୍ତିଟିଏ ଆଣିବ । ନ ଆଣିଲେ ସେ ରଖେଇଦେବନ । ସନ୍ଧ୍ୟାବେଳେ ଟିକିଏ ମାର୍କେଟ୍ଆଡ଼େ ଯିବା, ନା କ'ଣ କହୁଚ ?

ତୁ କହିବୁ—ହଉ ଆଜ୍ଞା, ଯିବା । ମୁଁ କିଛି ଆଣିପାରିବିନି । ତମେ ନିଜେ ଯାଇ ବଜାରଟା ନେଇଆସିବ । ମୁଁ ଆଣିବିନି କି ହଜାରେ ଥର ଫେରେଇ ପାରିବିନି । ତୋର ସବୁକଥା ମନେରହିଲା ତ ?

ପିଙ୍କିକୁ ଝିଅ କରି ଆମେ ଖେଳିଲୁ । ମେଙ୍କି ଯେମିତି କହିଥିଲା—ସେମିତି କଥାବାର୍ତ୍ତା କଲୁ । ଗେଷେଇ କଲୁ । ମଗରେ ପାଣି ଆଣି ଗଡ଼େଇ ଧୋଇଧାଇ ସଫା କଲୁ । ସେତେବେଳକୁ ଆମ ଦେହ, ଜାମାପଟା ପୂରା ମାଟିଆ ହୋଇଗଲାଣି । ଦୁଆରସାରା ପାଣି, ବାଲି, ମାଟି । ମା' ଗେଷେଇଘର ପଦାକୁ ଆସି ମତେ ଯେମିତି ଦେଖିଲେ ଭାରି ରାଗିଗଲା । କହିଲା—ହଇରେ ବଦମାସ୍, ଏଇକ୍ଷିଣା ଗାଧୋଇ ଦେଇଥିଲି । ଆସିଲୁ ଆଜ୍ଞେ । କ'ଣ ହେଉଚୁ ?

ମା' ମୋ କାନ ଧରି ଚୋବଲେଇଲା । ମେଙ୍କି ଆଗରେ ମତେ ମାରିବାରୁ ଭାରି ଲାଜ ଲାଗିଲା । ମନେ ମନେ ତା' ଉପରେ ରାଗିଗଲି । ହେଲେ କିଛି କହିପାରିଲିନି । ଆମ ଦୁଇଜଣଙ୍କୁ ଭଲକରି ଧୋଇଦେଲା । ତଉଲିଆରେ ପୋଛିଦେଲା । କହିଲା—ଯାଅ, ପଦାଘର ଖଟରେ ବସି ଖେଳ । ଆଉ ଯଦି ଟିକିଏ ଧୂଳି ହେଇଚ, ଖେଳ ବନ୍ଦ ।

ଆମେ ଯାଇ ଖଟ ଉପରେ ବସିଲୁ । ମୋ ବହିରୁ ଚିତ୍ର ଦେଖିଲୁ । ମୁଁ ମେଙ୍କିକି ପଢ଼େଇଲି । ଟେବୁଲ୍ ଉପରୁ ଖବରକାଗଜ ଆଣି ଡଙ୍ଗା, ହିନରାତି, କାପୁ କାପୁ କଲି । ଗୀତ ବୋଲି ଆମେ ପିଙ୍କିକୁ ନଚେଇଲୁ । ଖେଳେଇଲୁ । ତା'ପରେ ମେଙ୍କିର ମା' ଆସି ତାକୁ ଖାଇବାକୁ ଡାକନେଲେ । ମୁଁ ବି ଆସି ମା'କୁ ଖାଇବାକୁ ମାଗିଲି ।

ମା' କହିଲା—ଏଇକ୍ଷିଣି ପରା ଖାଇଥିଲୁ । ତୋ ପେଟରେ କ'ଣ ଅସୁର ପଶିଚି ? ରନ୍ଧା ତରକାରି ବସିଚି । ଆଉ ଟିକିଏ ଯାଉ ।

ମୁଁ କହିଲି—ମା'ଲୋ, ମତେ ଭାରି ଭୋକ ଲାଗିଲାଣି । ଖରାବେଳ ହେଲାଣି ମତେ ଖାଇବାକୁ ଦଉନି । ଭାରି ମା'ଟାଏ । ଭୋକ ମରିଗଲେ ଆଉ ଖାଇ ହବନି । ଇଏ ନିଜେ କହିବ । ମାଗିଲେ ଦବନି ।

ମା' ରାଗିଯାଇ କହିଲା—ବଦମାସ୍ ଟୋକା ଭାରି କଥା କହିଶିଖିଚି । ଏଠୁ ଏବେ ଯିବୁ ନା ଗୁଡିଆ ବାହାର କରିବି ? ବାପାଙ୍କ ପାଖରେ ବସିଥା । ଖାଇବାକୁ ଡାକିଲେ ଆସିବୁ । ଯ୍ମା' ପେଟ ପୋଡ଼ଯାଉଚି, ପାଞ୍ଚମିନିଟ୍

ଅପେକ୍ଷା କରିପାରୁନ । ବାପା ଚେୟାର ଉପରେ ବସି କ'ଣ ଲେଖୁଥିଲେ । ମୁଁ ଖଟ ଉପରେ ଶୋଇପଡ଼ିଲି । ସେ ମତେ ଜହ୍ନମାମୁ ବହି ପଢ଼ିବାକୁ ଦେଲେ । ମୁଁ ଶବ୍ଦ ଦେଖିଲି, ପଢ଼ିଲି । ଟିକକ ପରେ ମା' ଖାଇବାକୁ ଡାକିଲା । ବାପା ବି ମୋ ପାଖରେ ଖାଇବସିଲେ ।

ମୁଁ ବଡ଼ବାପାଙ୍କ ପରି ଭାତ, ଡାଲି, ତରକାରି, ଭଜା, ସବୁଥିରୁ ଟିକେ ଟିକେ ନେଇ ତଳେ ଥୋଇଲି । ହାତରେ ପାଣି ଧରି ଚକ୍ରୁ କଲି । ବାପା କିଛି ନ କରି ସାଙ୍ଗେ ସାଙ୍ଗେ ଖାଇଲେ । ମୁଁ ମା'କୁ କହିଲି—ମା'ଲୋ, ଦେଖିଲୁ ବାପା ବଡ଼ ମଣିଷଟାଏ ହେଲେଣି ଚକ୍ରୁ କରୁ ନାହାନ୍ତି । କେମିତିଆ ବାପା ଯେ, ଗାଧୋଇସାରି ଠାକୁରପୂଜା ବି କରୁ ନାହାନ୍ତି । ଚନ୍ଦନ ଘିନୁ ନାହାନ୍ତି । ଛ୍ୟା ।

ମୋ କଥା ଶୁଣି ବାପା ହସିଲେ । କହିଲେ—"ମୁଁ ପରା ତୋ ପୁଅ । ଆଉ ବଡ଼ ହେଲି କୋଉଦିନ ?" ବାପା ଏ କଥା କହିଲାବେଳେ ମତେ ଖୁସି ଲାଗେ ।

ମୁଁ କହେ—ବାପା ମୋ ପୁଅ ଆଉ ମା' ମୋ ଝିଅ, ନାଇଁଲୋ ମା' ?

ମୁଁ ମା'କୁ ଖୁଆଇଦବାକୁ ଡାକିଲି । ହାତରେ ଖାଇବାକୁ ମତେ ଜମାରୁ ଭଲ ଲାଗେନା । ମା' ମୋ ପାଖରେ ବସି ଖୁଆଇଦେଲା । ସେ ମତେ ଖୁଆଇଦେଲାବେଳେ ତା ପାଟିଟା ଆଁ ହେଇଯାଏ । ଆଉ ମୁଁ ଚଟ୍‌କିନା ତା' ପାଟିରେ ଲଙ୍କା ପୁରେଇଦିଏ । ବାପା ମତେ ଶିଖେଇ ଦେଇଥା'ନ୍ତି । ଲଙ୍କା ବେଶୀ ରାଗ ହେଇଥିଲେ ମା' ମୋ ପିଠିରେ ଦୁଲ୍‌କିନା ବିଧା ପକାଏ । ବାପା ହସନ୍ତି । ମା' କାନ୍ଦେ । ବାପା ଯେମିତି ମୋ ଆଗରୁ ଖାଇଦେଇ ଉଠଗଲେ—ମୁଁ ଗୀତ ବୋଲିଲି—

ଆଗ—ବଡ଼ ବାଘ
ପଛ—ସୁନା ଗଛ ।

ଯୋଉଦିନ ବାପାଙ୍କର ଖାଇବା ଡେରି ହୁଏ—ମୁଁ ଗୀତ ବୋଲେ—

ପଛ—ଘୁଅ ପୋଛ
ଆଗ—ସୁନା ଗଛ ।

ଖାଇଲାବେଳେ ମୁଁ ସବୁଦିନେ ଅଭିନୟ କରେ । ମା', ବାପା, ଧାନବାପା, ଉଷାନାନି । ମାମୁଙ୍କର ନାଁ'ରେ କୁନି କୁନି ଗୁଣ୍ଡା କରି ମୋତେ

ଖୁଆଇଦିଏ । ଖୁଆଇସାରିଲା ପରେ ମା’ ମୋତେ ମୁହଁହାତ ଧୋଇ କାନିରେ ପୋଛିଦେଲି । କହିଲି—ଯା, ଭଲରେ ଭଲରେ ବାପାଙ୍କ ପାଖରେ ଶୋଇପଡ଼ । ନଇଲେ—ଖେଳ ବନ୍ଦ ।

ମାଡ଼ ଭୟରେ ମୁଁ ଯାଇ ଖଟ ଉପରେ ଶୋଇପଡ଼ିଲି । ବାପା ଖଟବାଡ଼ାରେ ତକିଆକୁ ଆଉଜି ପତ୍ରିକାଟିଏ ପଢୁଥାନ୍ତି । ସେ ଖରାବେଳେ ଜମାରୁ ନିଦରେ ଶୁଅନ୍ତିନି । ମା’ ଶୋଇପଡ଼ିଲେ ତା’ ଉପରେ ବିରକ୍ତ ହୁଅନ୍ତି । ତାକୁ ଚିଡ଼ାନ୍ତି । ମତେ ବି ଆଦୌ ନିଦ ହୁଏନା । ଦିନରେ ଶୋଇବା କାଳେ ଭଲ ନୁହଁ । ବାପା ଯୋଉଦିନ ରାତିବେଳେ ଶୁଅନ୍ତି, ଉଠନ୍ତି ଯାଇ ତା’ ପରଦିନ ସକାଳେ । ରାତିରେ ଖଟ ଉପରେ ଖା’ନ୍ତି । କେହି ଉଠେଇଲେ ଖାଲି ଗରଗର ହ’ନ୍ତି । ନିଜେ ତ ଶୋଇବେନି । ମା’ ଶୋଇଲେ ତାକୁ ଚିମୁଟିବେ, ଶୁଆଇଦେବେନି । ମତେ ଖାଲି ଶୋଇବାକୁ କହିବେ । ନ ଶୋଇଲେ ଧମକେଇବେ । ମାରିବେ । ସେ ଯେମିତି ପିଲାବେଳେ ସୁନାପରି ଶୋଇପଡ଼ୁଥିଲେ । ବାପା ହେଇ ତ ଶୋଉ ନାହାନ୍ତି । ସେତେବେଳେ ଯାହା ଶୋଉଥିବେ । ମତେ ତ ନିଦ ମାଡ଼ୁନି—ଶୋଇବି କେମିତି ? ଏମିତି କଥା କ’ଣ ସେ ବୁଝିପାରୁ ନାହାନ୍ତି !

ଆଖି ମେଲାକରି ମୁଁ ଖଟ ଉପରେ ଗଡ଼ାପଡ଼ା ହେଲି । ବାପା ବିରକ୍ତ ହେଇ କହିଲେ—ଆବେ, ଶୋଇଲୁ ନା ନାହିଁ । ଆଖି ବନ୍ଦ କର । ବାଁ କଡ଼ମାଡ଼ି ଶୁଅ । ବଦମାସ୍, ସବୁବେଳେ ଖାଲି ଖେଳ । ଆଜି ନ ଶୋଇଲେ ଦେଖିବୁ ।

ମୁଁ ତାଙ୍କୁ କହିଲି—ତମେ ବଡ଼ ପିଲା ହେଇ ଶୋଉନା, ମୁଁ ଶୋଇବି ? ତମେ ତ କୁହ, ଶୋଇକି ପଢ଼ିଲେ ଆଖି ଖରାପ ହବ । ତମେ ତ ଚଷମା ଦଉଚ । ଏଣେ ଶୋଇକରି ପଢ଼ୁଚ । ମୁଁ ଶୋଇକି ପଢ଼ିଲେ ଗାଳି ଦଉଚ । ସୁଉଦୁ ମିଛୁଆ ।

ମୋ କଥା ଶୁଣି ବାପା ରାଗିଗଲେ । କାନ ଧରି କହିଲେ—ମେଞ୍ଚଡ଼ଟାଏ, ଭାରି ବଡ଼ି ବଡ଼ି କଥା କଉଚି । ଶୁଅ । ମୁଁ ବାଁ କଡ଼ମାଡ଼ି ଶୋଇଲି । ବାପା ପୁଣି ବହି ଧରି ପଢ଼ିଲେ । ସେମିତି ଆଖି ମିଞ୍ଜି ମିଞ୍ଜି କରୁଥାଏ । ଖାଇସାରି ମା ଆସି ବାପାଙ୍କ ପାଖରେ ଶୋଇପଡ଼ିଲେ । ବାପା ମା ପାଖାପାଖି ଶୋଇଥିବାର ଦେଖିଲେ, ତାଙ୍କ ମଝିରେ ପଶିବାକୁ ମତେ

ଘରି ଭଲଲାଗେ । ସେମାନେ ଯେମିତି କଥା ହେବାକୁ ଆରମ୍ଭ କରିଚନ୍ତି—ମୁଁ କହିଲି, ମତେ ଡିଷ୍ଟର୍ବ କରୁଚ, ନିଦ ହଉନି । କେମିତି ଶୋଇବି ?

ବାପା ଜୋର୍‌ରେ ହସିଲେ । କହିଲେ, ହଉ ଶୋଇପଡ଼ ।

ଟିକିଏ ପରେ ମୁଁ ପୁଣି କହିଲି—ମା'ଲୋ ମୂତି ଯିବି ।

ବାପା ରାଗିଯାଇ କହିଲେ—ସେ ମୂତ ଫୁତ ବନ୍ଦ । ଶୁଅ । ମୂତି ସାରିଲ୍ ପରେ କହିବ—ମା', ହାଗିବି ।

ମୁଁ କାନ୍ଦ କାନ୍ଦ ହେଇ କହିଲି—ମା' ଘରି ମୂତ ।

ବାପା ଧମକେଇ କହିଲେ—ବଦମାସ୍, ମୂତ୍ ସେଇଠି । ମୂତ୍ । ଆଣିଲି ବାଡ଼, ନ ମୂତିଲେ ସେକଦେବି ଧରି !

ବାପା ଯେମିତି ଏତିକ କହିଚନ୍ତି, ମୁଁ ସାଙ୍ଗେ ସାଙ୍ଗେ ଖଟ ଉପରେ ବସିଲି ।

ମା ହସି ହସି କହିଲା—ସେ ବଦମାସ୍ ଯାହା କଉଚି, ସେଇଆ କରିଦେବ । ଯାଉ ବାହାରେ ମୂତିଆସୁ ।

ତା' ପାଟିରୁ କଥା ସରିଚି କି ନାହିଁ, ମୁଁ ଖପ୍‌କିନା ଖଟତଳକୁ ଡେଇଁପଡ଼ିଲି । ମୂତିଯିବା ବାହାନାରେ ଦୁଆରପିଣ୍ଡାରେ ବସି ଉଙ୍ଗା କଲି ।

ବାପା ପୁଣି ଡାକ ପକାଇଲେ । ଏଡ଼େବଡ଼ ପାଟିରେ କହିଲେ—ହଇରେ ଟୋକା, କେତେ ମୂତୁଚୁ । ଆସୁରୁ ନା ନାହିଁ । ତାଙ୍କ ପାଟି ଶୁଣି ଡରି ଡରି ଖଟ ଉପରକୁ ଆସିଲି । ସେମାନଙ୍କ ମଝିରେ ଶୋଇପଡ଼ିଲି । ମଜା କରିବାପାଇଁ ଯେମିତି ମା'ର ଛାତି ପାଖକୁ ମୁଣ୍ଡ ନେଇଚି, ସେ ରାଗରେ ମୋତେ ଠେଲିଦେଇ କହିଲା—ଛତରାଟୋକା, ଦିନୁଦିନ ଉଡିଆଣି ଛୁଆ ହେଇଯାଉଚି । ତିନିବରଷଯାଏ ଖାଇଲୁ, ବୋତଲ ଛୁଇଁଲୁନି—ବୁଢ଼ା ବୟସରେ ପୁଣି । ଗେଞ୍ଜିହେଇ ଶୁଅନା କଉଚି । ଭଲ କରି ଶୁଅ । ଆଖି ବୁଜ । ବୁଜ କଉଚି ।

ତା'ର ଧମକାଣରେ ଆଖି ବୁଜିଲି ସିନା, ହେଲେ ତା' ଉପରେ ଘରି ରାଗ ହେଲା । ବାପା ନ ଥିଲେ, ବିଛଣାରେ ପଡ଼ୁ ପଡ଼ୁ ଘୁଙ୍ଗୁଡ଼ିମାରେ । ମୁଁ ଚୁଟ୍‌ଚିରେ ଖସିଯାଏ । ଖେଳେ । ଆଉ ଦିନେ ଦିନେ ଭିତରପଟୁ ଗୁବ ପକେଇଦିଏ ଯେ କୁଆଡ଼େ ଯାଇପାରେନି । ଏମିତିଆ ମା'ଟା ଯେ ।

ମା' କଥା ଶୁଣି ଆଖି ବୁଜିଲି ମିନା, ହେଲେ ଜମାରୁ ନିଦ ହେଲାନି । ଆଖି ମିଞ୍ଜି ମିଞ୍ଜି କରୁଥାଏ । କଡ଼ ମୋଡ଼ୁଥାଏ । ଖେଳକଥା ମନେପକେଇ କୁଲୁରି ଉଠୁଥାଏ । ଖୁସୀ ମନରେ କେତେବେଳେ ଯେ ଗୀତ ବୋଲିଦେଇଛି, ମୋତେ ଆଉ ମାଲୁମ୍ ନାହିଁ । ମୋ କଣ୍ଠ ଶୁଣି ମା' ସାଙ୍ଗେ ସାଙ୍ଗେ ବହି ରଖିଦେଇ କହିଲା—ବାପ ଯେମିତି ପୁଅ ବି ସେମିତି । ଇଏ ତ ଶୋଇବେନି, ଗୁଣମନ୍ତ ପୁତ୍ରମଣି କାଇଁକି ଶୋଇବ ? ଶୋଉ ଶୋଉ ନିଘୋଡ଼ ନିଦରେ ବାବୁଙ୍କର ଗୀତ ବୋଲି ଆରମ୍ଭ ହେଇଗଲା ।

ସେ ମୋ କାନ ଧରି କହିଲା—ହଇବେ ବଜାଖି ଟୋକା, ଶୋଇବୁନି ଯଦି ଯା, ଚେୟାର ଉପରେ ବସିକି ପଢ଼ । ଗୀତ ଫିତ ସବୁ ବନ୍ଦ । ଉଠ୍ ।

ତା କଥାଶୁଣି ମୁଁ ଧଡ଼ପଡ଼ ହେଇ ଉଠିଲି । ବ୍ୟାଗ୍ ଭିତରୁ ବହି ବାହାର କରି ଚେୟାର ଉପରକୁ ଗଲି । ବହିର ପୃଷ୍ଠା ନେଉଟେଇଲି ଏବଂ ଭିତରେ ପୂରେଇଥିବା କାଗଜ ବାହାର କରି ମୋର ଅସଲପାଠ ଆରମ୍ଭ କରିଦେଲି ।

ମା', ବାପା ଏମିତି ବୋକା ଯେ ସେମାନେ ପଢ଼ୁଥିଲାବେଳେ—କିଏ କ'ଣ କରେ ଜମାରୁ ଜାଣିପାରନ୍ତିନି । ମୁଁ କାଗଜରେ ଡଙ୍ଗା କରୁଥାଏ ଆଉ ଝରକାବାଟ ଦେଇ ପଦାକୁ ଚାହୁଁଥାଏ । ଦେଖିଲି—ମେର୍କି ତାଙ୍କଘରୁ ଦୋଉଡ଼ି ଦୋଉଡ଼ି ଆସି ଚୁଟ୍‌କିନା ଆମ ଝରକା ପାଖରେ ଠିଆ ହେଲା । ମୁଁ ବାପା ମା'ଙ୍କୁ ଚାହିଁଲି, ଆଉ ଖସି ଚାଲିଗଲି ତା ପାଖକୁ । ବାପା କି ମା କେହି ଜାଣିପାରିଲେନି । ଦେଖି ଦେଇଥିଲେନା, କହିଥା'ନ୍ତେ ମା' ମେର୍କି, ଯା', ଆଉଟିକେ ପରେ ଆସିବୁ । ଲିଟୁନନା ପଢ଼ୁଚି । ପଢ଼ିସାରୁ, ଖେଳିବ । ତାଙ୍କ କଥାଶୁଣି ମେର୍କି ଚାଲିଯାଏ । ମାଡ଼ ଭୟରେ ମୁଁ ବହି ଧରେ । ହେଲେ ପଢ଼ିବାକୁ ଜମାରୁ ମନ ହୁଏନା । ବାପା, ମା' ଏତିକି କେମିତି ଜାଣିପାରନ୍ତିନି କେଜାଣି ! ମନ ନ ଥିଲେ କ'ଣ ପାଠ ମନେ ରୁହେ ? ଛି ବଡ଼ଲୋକଗୁଡ଼ା ସୁଦ୍ଧୁ ବୋକା ।

ପାଟି ଫାଟି ନ କରି ଆମେ ଦୁହେଁ ବହୁତ ବେଳଯାଏ ଖେଳିଲୁ । ମା' ବାଲ୍‌ଟି ହାତରେ ଧରି ଦୁଆରମୁହଁକୁ ଆସିଲା । କହିଲା—ହଉ ବାପଧନ, ପଢ଼ିଲନି କି ଶୋଇଲନି । ଖେଳିଲ, ଖେଳ । ସନ୍ଧ୍ୟାବେଳକୁ ଯଦି କହିବୁ, ମା' ଭୋକ ଲାଗିଲାଣି, ଶୀଘ୍ର ଖାଇବାକୁ ଦେ । ଆଉ ପଡ଼ି ବସିଲେ ଯଦି

ଡୋଳେଇଚୁ ତା'ହେଲେ ତୋର ଦାନେକୁ ମୋର ଦାନେ । ସେତିକବେଳେ କଥାବାର୍ତ୍ତା ।

ମା' ମତେ ଗାଳି ଦେଲାନି କି ବେଶି କିଛି କହିଲାନି । ସାଙ୍ଗମାନେ ଆସି ପଦାରେ ଖେଳୁଥାନ୍ତି । ଗୁରୁଣ୍ଡା ପରେ କିଏ କ'ଣ ପଢ଼ନ୍ତି ଯେ, ସେ ମତେ କ'ଣ କହିଥାନ୍ତା । ସେ ବାଲ୍‌ଟି ଧରି ପାଇପ୍‌ରୁ ପାଣି ଆଣିଲା । ଆମେ ଯାଇ ସାଙ୍ଗମାନଙ୍କ ଭିତରେ ମିଶିଗଲୁ ।

ମା' ପାଣି ଆଣୁଥାଏ । ମଝିରେ ମଝିରେ ମତେ ଡାକପକେଇ କହୁଥାଏ—ଏ ଲିଟୁ ଚଗଲା ହ'ନା ବାପା । ଏତେ ଦୋଉଡ଼ନା । ଆରେ ଚପଲ କ'ଣ କଲୁ ? ଗୋଡ଼ରେ କଣ୍ଟା ପଶିବ । ମୁଁ ତାକୁ ଗୁହେଁ । ମୋ କାମରେ ଲାଗିଯାଏ । ତା କଥା ଯେମିତି ଜମାରୁ ଶୁଣିପାରେନା । ତା ଉପରେ ରାଗିଯାଏ ଆଉ ମନେ ମନେ କହେ—ସବୁବେଳେ ଖାଲି ଲିଟୁ, ଲିଟୁ, ଲିଟୁ । ତୋ କାମ ତ ତୁ କରୁଚୁ । ଲିଟୁ ଲିଟୁ କାଇଁକି ହଉଚୁ । କି ଯେ ମା, କିଛି ବୁଝିପାରୁନି । ଖେଳାଳିବେଳେ ପାଟି କରନ୍ତି, ଦୋଉଡ଼ନ୍ତି ଏତିକି ଜାଣିପାରୁନି । ଖାଲି ଚଲେଉଚି । ସୁଉଦୁ ଗଧୀଟା । ବାପା କ'ଣ ମିଛରେ ତାକୁ ଆଉ ଚଡ଼୍ଡୋଉଚନ୍ତି ।

ସାଙ୍ଗମାନଙ୍କ ସାଙ୍ଗରେ ମନଇଚ୍ଛା ଖେଳିଲି । ମେଙ୍କି ସାଙ୍ଗରେ ତାଙ୍କ ଘରକୁ ଗୁଲିଗଲି । ସେତେବେଳକୁ ଅନ୍ଧାର ହେଇଗଲାଣି ।

ମା' ଏଡ଼େ ବଡ଼ ପାଟିକରି ଯେମିତି ଲିଟୁ ଲିଟୁ ଚଲେଇଚି—ଦୋଉଡ଼ିଗଲି ତା ପାଖକୁ । ସେ ମୋତେ କୋବଲେଇଲା । ଧୋଇଧାଇ ଦେଲା । କହିଲା—ଯା' ଫଳା ବୋଲି ପାଠ ପଢ଼ ।

ମୁଁ ସୁନାପିଲାଟି ପରି ତା କଥା ମାନିଲି ।

## ॥ ଦୁଇ ॥

ଆମ ଖେଳ ଭିତରେ ମେଙ୍କି ନ ଥିବାରୁ ମୋତେ ଜମାରୁ ଭଲ ଲାଗୁ ନ ଥିଲା । ମନେ ମନେ ତାକୁ ଭାରି ଖୋଜୁଥିଲି । ତାକୁ ଡାକିବାକୁ ଯାଇଥିଲି ଯେ, ହେଲେ କବାଟ ଭିତର ପାଖରୁ ବନ୍ଦ ଥିଲା । ମନ ମାରି ଫେରି ଆସିଲି ।

ତା ବାପା ବୋଉଙ୍କ ଉପରେ ରାଗିଗଲି । ଗୁରୁଟା ପରେ କ'ଣ ପିଲାଙ୍କୁ ଘର ଭିତରେ ରଖନ୍ତି ?

ମାତ୍ର ମୁଁ ଖେଳୁଥିଲାବେଳେ ପଛରେ ଠିଆହୋଇ ମେଙ୍କି କହିଲା— ଏ ଲିଟୁ ବଜାର ବୁଲିଯିବା ଆ । ବୋଉ, ବାପା ବାହାରିଲେଣି । ଆ ।

ରାଗରେ ଆଖି କଟମଟ କରି ମୁଁ ତା ଆଡ଼କୁ ଚାହିଁଲି । ସେ ଭାରି ବଢ଼ିଆ ଦିଶୁଥାଏ । ପିନ୍ଧିଥାଏ ଫୁଲ୍ ପେଣ୍ଟ, ଫୁଲ ଫୁଲକିଆ ସୂତା ଜରିଦିଆ ଜାମା । ନାଲିଆ ଜୋତା ଆଉ ମୋଜା । ମୁହଁରେ ସୁହଁ, ପାଉଡର, ଝିକିଲି ମାରିଥାଏ । ମନ୍ଦ ମନ୍ଦ ବାସୁଥାଏ । ଏମିତି ସଜ ହୋଇଥିଲାବେଳେ ତା ପାଖ ଛାଡ଼ିବାକୁ ମୋର ଇଚ୍ଛା ହୁଏନା । ଏକଦମ୍ ସୁନ୍ଦର ଦିଶେ । ତାଙ୍କ କାଠ ଗେଟ୍ ପାଖରେ ଠିଆ ହୋଇଥା'ନ୍ତି ତା' ବାପା ବୋଉ । ମାଉସୀ କାଖେଇଥା'ନ୍ତି ପିଙ୍କିକି । ସେମାନେ ବି ଭାରି ବେଶ ହୋଇଥା'ନ୍ତି ସିନେମା ଲୋକଙ୍କ ପରି । ମୋ ମା'ଟା ଏମିତି ହୁଣ୍ଡୀ ଯେ ଜମାରୁ ସଜବାଜ ହୁଏନା । ବୋଉ କହିବ ଆଳୁଘଣ୍ଟା । ବାପା କହିବେ ମଫୁ, ଚୂଡ଼ା । ରମାମାଉସୀ କହିବେ ମୂଢ଼ା । ବାପା ଏବେ କୋଉ ଭଲ କି ? ସିଏ ବି ସେମିତି । ଛି । ସଜ ହେବାକୁ ଯେମିତି ତାଙ୍କୁ ଗନ୍ଧାଏ ।

ବଜାର ଯିବାପାଇଁ ମେଙ୍କି ମୋ ହାତଧରି ଟାଣିଲା । ମୁଁ କହିଲି— ମା' ମାରିବ, ଯିବିନି ।

ସେ କିନ୍ତୁ ମତେ ଛାଡ଼ିଲାନି । ମୋ ପାଖରେ ଠିଆ ହେଲା ।

ତା ବାପା କହିଲେ—ମା' ମେଙ୍କି, ଲିଟୁଭାଇ ଥାଉ । ତୁ ଆସିଲେ ଖେଳିବ । ତା'ର ଜିଦ୍ ଦେଖି ମାଉସୀ କହିଲେ— ହଉ ଚାଲୁ । ଆମେ ଏଇ ପାଖ ଦୋକାନରୁ ଫେରି ଆସିବା । କୋଉ ବେଶୀ ଦୂର ଯାଉଚେ ଯେ ।

ମୁଁ ଆଉ ମେଙ୍କି ହାତ ଧରାଧରି ହୋଇ ବଜାର ଗଲୁ । ତା ବାପା ବୋଉ ପାଖାପାଖି ଚାଲୁଥାନ୍ତି । କ'ଣ ସବୁ କଥା ହୋଇ ହସୁଥାନ୍ତି । ଦିନୁଟାରେ ବି ଦୋକାନରେ ସବୁ ଲାଇଟ୍ ଜଳୁଥାଏ । ଭିତରଟା ଖାଲି ଚକ୍ ଚକ୍ ମାରୁଥାଏ । ମଉସା ମାଉସୀ ଗୋଟାଏ ଦୋକାନକୁ ଯାଇ ଜାମା ପେଣ୍ଟ କିଣିଲେ । ମେଙ୍କିକି ପଚାରିଲେ - ମା'ଲୋ ଏଇଟା ଚଳିବ ? ସେ ମୁଣ୍ଡ ଟୁଙ୍ଗାରି ହଁ କଲା । ସେମାନେ ଆଉ ଗୋଟାଏ ଦୋକାନକୁ ଗଲେ ।

କିଣିଲେ—କାଚ, ନଖପାଲିସ୍, ପାଉଡର, ରିବନ । ପୁଣି ତାକୁ ପଚାରିଲେ—ଆଉ କ'ଣ ନବୁ କଲେ ମା' ?

ସେ କହିଲା—ସେଏଣ୍ଟେ ।

ମାଉସୀ କହିଲେ—ଅଛି ପରା ।

ସେ ଅଇନ କଲା । କଇଲା—ତୋର ସିନା ଅଛି, ମୋର କାଇଁ ଯେ ? ଦୋକାନର ସବୁ ଲୋକ ତା କଥା ଶୁଣି ହସିଲେ । ସେଏଣ୍ଟେ କିଣା ହେଲା । ଶେଷରେ ମଉସା ଆମ ତିନିଜଣଙ୍କ ହାତରେ ଧରେଇଦେଲେ ତିନିଟି ଅମୂଲ ଚକୋଲେଟ୍ । ଆମେ ଘରକୁ ଫେରିଲୁ ।

ବାଟରେ ମେଙ୍କି ତା ନଖ ଦେଖେଇ କହିଲା—ଦେଖ୍ ଲିଟୁ, ମୋ ନଖଟା କେତେ ନାଲି ଦିଶୁଚି । ନେଲ୍ ପଲିସ୍ ମାରିଚି । ମୁହଁରେ ପାଉଡର, ସ୍ନୋ ମାରିଚି । ମୁଣ୍ଡରେ ଫୁଲ ଖୋସିଚି, ଦେଖ୍ । ମୋ ଚପଲରେ ଫୁଲ ପଡ଼ିଚି । ନାଲି ଗୁଲୁଗୁଲୁ । ମୋ ବାପା କିଣି ଦେଇଛନ୍ତି । ଜାଣିଚୁ ନା, କାଲି ଆମେ ସ୍କୁଟରରେ ବସି ସିନେମା ଯାଇଥିଲୁ । ରାତିରେନା ଆମ ଟିଭିରେ ବଡ଼ିଆ ନାଚ ଦେଖେଇଲା । ବାପାବୋଉଙ୍କ ପରି ଲୋକନା, ହାତ ଧରାଧରି ହୋଇ ନାଚୁଥିଲେ, ଗୀତ ବୋଲୁଥିଲେ । ଗେଲ କରୁଥିଲେ । ଦଦ୍ଦ ଖାଉଥିଲେ । ମୁଁ ଯେମିତି ଉଠି ବସିଚନା, ବୋଉ ମାଇଲା । ଖଟଆଡ଼କୁ ମୁହଁକରି ଶୁଆଇଦେଲା । ତୁ ଆଜ ଆସିବୁ । ଟି.ଭି.ରେ ନାଚ ଦେଖିବା । ମୁଁ ତତେ ସେମିତିଆ ନାଚ ଶିଖେଇଦେବି । ଆମେ ସାଙ୍ଗ ହେଇ, ହାତ ଧରାଧରି ହେଇ ନାଚିବା । ମୁଁ ତତେ ଗେଲ କରିବି । ତୁ ମତେ ଗେଲ କରିବୁ । ତୁ ମୋ ଦ' ଖାଇବୁ । ଭଲ ଲାଗିବ ।

ମୁଁ ମେଙ୍କି ଉପରେ ରାଗିଯାଇ କହିଲି—ହେକ୍ ମିଛେଇ, ପିଲାମାନେ ସିନା ମା' ଦଦ ଖାଆନ୍ତି । ତୁ କ'ଣ ମା' ହେଇଚୁ କି ? ମୁଁ ଆଜ ମୋ ମା'କୁ ପଚାରିବି । ରହିଥା' । ବାପାଙ୍କୁ କହିବି—ଆମର ସ୍କୁଟର, ଟି.ଭି. ଆଣିବା ପାଇଁ । ବାପାମା' ପରା କହୁଥିଲେ ଆର ମାସରେ ଆଣିବେ ବୋଲି ।

ମନେ ମନେ ବାପାମା'ଙ୍କ ଉପରେ ଚିଡ଼ମାଡ଼ିଲା । ଏମିତି ବାପା ଯେ, ଯେତେ କହିଲେ—କିଛି ବୋଲି କିଛି ଆଣୁ ନାହାନ୍ତି । ମତେ କି ମା'କୁ ସାଙ୍ଗରେ ଟିକିଏ ସିନେମା ଦେଖେଇ ନଉ ନାହାନ୍ତି । ଜିନିଷ ଯାଇ କିଣେ

କିଣି ଆଣୁଛନ୍ତି । ମା'କୁ ବ ନଉ ନାହାନ୍ତି । ଯୁଆଡ଼େ ଗଲେ ସୁଜାଏ ବହି କିଣି ଆଣୁଛନ୍ତି । ପଢ଼ୁଛନ୍ତି ଆଉ କହୁଛନ୍ତି, 'ପଢ଼' । ଛ୍ୟା ।

ବଜାରରୁ ଫେରୁ ଫେରୁ ସନ୍ଧ ହେଇଗଲା । ମେଙ୍କିକ ତାଙ୍କ ଗେଟ୍ ପାଖରେ ଛାଡ଼ିଦେଇ ଘରକୁ ଦୌଡ଼ିଆସିଲି । ଭିତରକୁ ଯେମିତି ଯାଇଚି, ଦେଖିଲି ବାପା ଦୁଆର ମଝିରେ ଚେୟାର ପକେଇ ବସିଛନ୍ତି । ତାଙ୍କ ମୁହଁକୁ ଦେଖି ମତେ ଡର ମାଡ଼ିଲା । ମା' ପାଖକୁ ଗଲି ଯେ, ମୋତେ ଦେଖି ସେ ଉଠିଗଲେ ଷ୍ଟୋରଘର ଭିତରକୁ । ମୁଁ ଡରରେ ଯାଇ କାନ୍ଥ ପାଖରେ ଠିଆ ହେଲି ।

ବାପା କହିଲେ—ହଇଓ, ବାଡ଼ି ଖଣ୍ଡେ ଆଗ ଆଣିଲ । ଆଣ । ତା'ପରେ ମତେ କହିଲେ—ଯ୍ୟେ ଟୋକା, ସେଠି କାଇଁକି ଠିଆ ହେଇଚୁ ? କାନ ଧରି ମୋ ପାଖକୁ ଆ । ଆ' କଉଚି ।

ମୁଁ କାନ ଧରି ତାଙ୍କ ପାଖକୁ ଆସିଲି ।

ମତେ ଚଢ଼ା ଗଳାରେ ପଚାରିଲେ—ହଇରେ ବଦମାସ୍, କୁଆଡ଼େ ଯାଇଥିଲୁ ଏତେବେଳଯାଏ । କହ, କୁଆଡ଼େ ଯାଇଥିଲୁ ?

ମୁଁ ଥରି ଥରି କହିଲି—ବଜାର ।

କାହା ସାଙ୍ଗରେ ଯାଇଥିଲୁ ?

ମେଙ୍କି ସାଙ୍ଗରେ । ତା ବାପାବୋଉ ଡାକଲେ । ମୁଁ ଗଲି ।

ଘରେ ମା'କୁ କି ମତେ କହିକରି ଯାଇଥିଲୁ ? ଧୋଇଧାଇ ହେଇ ଭଲ ଜାମା ପ୍ୟାଣ୍ଟ୍ ପିନ୍ଧିଥିଲୁ ? ମେଙ୍କି ତୋରି ପରି ଖାଲି ପାଦରେ ମଳମକନ୍ଦରା ହେଇ ଯାଇଥିଲା କି ?

ମୁଁ କିଛି କହିଲିନି । କାନ ଧରି ସେମିତି ଠିଆ ହେଇ ରହିଲି ।

ବାପା ମୋ ହାତ ଧରି ତାଙ୍କ ଆଗକୁ ଭିଡ଼ିଆଣିଲେ । କହିଲେ—କାନ ଧରି ଶଏ ଥର ଉଠବସ ହ' ।

ମୁଁ ତାଙ୍କ କଥା ଶୁଣି ସେମିତି ଠିଆ ହେଇ ରହିଲି । ବାପା ରାଗିଯାଇ ମୋତେ ମାଇଲେ । ପିଠି, ଗାଲ, ହାତ, ଗୋଡ଼ ସବୁଆଡ଼େ । ମତେ ଭାରି କାଟିଲା । କାନ୍ଦିଲି । ପୁଣି କହିଲେ—ଆଗ କାନ୍ଦ ବନ୍ଦ କର । କରୁଚୁନା ପୁଣି ଦେଖିବୁ ? ଉଠବସ ହ' । ବଜାଖି ଟୋକା । କଥା ମାନବନି । ସବୁବେଳେ

ଦାଦାଗିରି, ଖେଳ । ମେଙ୍କି ଆସିଲେ ଯିବୁ' ମୁଣ୍ଡ ଖରାପ । ବସୁଚୁ ନା ନାହିଁ । ପୁଣି ଦେଖିବୁ ?

ମାଡ଼ ଭୟରେ ମୁଁ ଉଠବସ ହେଲି । କହିଲେ—ବଜାଣ୍ଡ ଟୋକା, ବଡ଼ ବଡ଼ କଥା କହିଶିଖିଚି । ଶୋଇବାକୁ କହିଲେ ଚୁପ୍‌କନା ଖସିଯିବ । ଖାଲି ମୂତ ମାଡ଼ିବ ।

କହ—ଘରେ ନ କହି ଆଉ କୁଆଡ଼େ ଯିବୁ ?

ମୁଁ କିଛି ନ କହି ସେମିତି ଠିଆ ହେଲି ।

ତାଙ୍କ କଥାର ଉତ୍ତର ନ ଦେଇ ଠିଆ ହେଲେ—ସେ ଆଉରି ରାଗିଯାଆନ୍ତି । ମାଡ଼ ଖାଇ କାନ୍ଦିଲେ ବେଶୀ ମାରନ୍ତି । ମତେ ମାରି ମାରି ଛାଡ଼ିଦେଲେ । ଏତେ କାଟିଲି ଯେ, ଆଉ କାନ୍ଦିପାରିଲିନି । ସେମିତି ଠିଆ ହୋଇ ରହିଲି ।

ତା'ପରେ ରାଗିଯାଇ କହିଲେ—ଯା', ବାହାରିଯା ଏ ଘରୁ । ଯାଉଚ ନା ନାହିଁ ? ମୁଁ ବକଳ ହୋଇ ମା'କୁ ଚାହିଁଲି । ସେ ପୁଣି ଏମିତି ଯେ, ବାପା ମାରୁଥିଲାବେଳେ କିଛି କହିବନି । ଘର ଭିତରକୁ ପଳେଇଯିବ ।

ମା' ଯେମିତି କିଛି ନ କହିଲା, ଦାଣ୍ଡ ଦୁଆରମୁହାଁ ଆଡ଼କୁ ଆଗେଇଲି । ସାଙ୍ଗେ ସାଙ୍ଗେ ବାପା କହିଲେ—ହେ ଟୋକା, କୁଆଡ଼େ ଯାଉଚୁ ? ଆ, ଏଆଡ଼େ ଆ । ଆସୁଚୁ ନା ନାହିଁ ?

ମୁଁ ଆସି ତାଙ୍କ ପାଖରେ ଠିଆ ହେଲି ।

ସେ ମା'କୁ କହିଲେ—ଦେଖୁଚ, ଏଡ଼େ ବଜ୍ଜାତ ଟୋକା, କେତେ ଗଉଁ । ପାଟିରୁ ଉଁ କି ଚୁଁ କିଛି ବାହାରୁନି । ମାଡ଼ ଖାଇ ଖାଇ ଦରମରା ହେଲିଣି । ନିଅ । ଏଇଟାକୁ ସାବୁନ ମାରି ଧୋଇଧାଇ ଦିଅ । ଜାମାପ୍ୟାଣ୍ଟ ଖୋଲି ଲଙ୍ଗଳା କରି ଗୁଡ଼ିଦିଅ । ଦେଖିବ ଅଣ୍ଡି ବଜ୍ଜାତକ କେତେ ଖେଳିବ ?

ଏତିକି କହି ସେ ଘର ଭିତରକୁ ଚାଲିଗଲେ । ଖଟ ଉପରେ ଶୋଇପଡ଼ିଲେ । ମା' ମୋ ପାଖକୁ ଆସିଲା । ତାକୁ ପାଖରେ ପାଇ ମୁଁ ଆଉରି ଜୋର୍‌ରେ କାନ୍ଦିଉଠିଲି । ସେ ମୋତେ କାଖ କଲା । ମୋ ମୁଣ୍ଡ ନଇଁଗଲା ତା କାନ୍ଧ ଉପରେ । ମୋ ଦେହରୁ ଝାଳ ପୋଛି ପୋଛି ସେ କହିଲା—ତୁ ଯୋଉ ବୁଦ୍ଧି ଧରିଚୁ, ବେଶୀଦିନ ବଞ୍ଚିବୁନି । ମାଡ଼ଖାଇ ଗଇଁଆ ହୋଇ-ଗଲୁଣି । ଆଉ କି ମଣିଷ ହେବୁ ? ଏମିତି ଚନ୍ଦିଆ ଛୁଆ ଯେ, କ'ଣ ପଚାରିଲେ

ପାଟିରୁ ଉଁ କି ଚୁଁ ବାହାରିବନି । ମାଡ଼ ଖାଇ ଖାଇ ମରିଯିବ ବରଂ ଗଉଁ ଗୁଡ଼ିବନି । ବାପ ଯେମିତି ପୁଅ ବି ସେମିତି । ତୁ ମତେ କି ବାପାଙ୍କୁ ନ କହି ନାସନା ହେଇ କାହିଁ ବଜାର ଯାଉଥିଲୁ ? ଗଲୁ ତ, ଏଥର ପାଆ । ମୁଁ କ'ଣ କରିବି ?

ସେ ମତେ ଧୋଇଧାଇ ସଜ କରିଦେଲା । ଆଖିରୁ ଲୁହ ପୋଛିଦେଲା । ମୋର ସେମିତି କହିଁ ଉଠୁଥାଏ । କାଖ କରି ଚୁମା ଦେଲା । କହିଲା—ମୋ ସୁନା ବାପା ଟା ପରି, ଆଉ କୁଆଡ଼େ ଯିବୁନି । ବୋଷେଇଘର ଭିତରକୁ ନେଇ ମୋ ହାତରେ ଯେମିତି ବିସ୍କୁଟ୍ ଦେଇଛି, ରାଗରେ ତା ହାତକୁ ଛିଞ୍ଚାଡ଼ିଦେଲି । ସେ ମତେ ପୁଣି କୋଳ କଲା । ତା କାନ୍ଧରେ ମୋ ମୁଣ୍ଡକୁ ନଇଦେଲା । ମୋ ପାଟିରେ ବିସ୍କୁଟ୍ ଗୁଞ୍ଜି ଦଉ ଦଉ କହିଲା—ହଉ, ବାପା ତତେ ମାରିଛନ୍ତି, ପାଇବେ ପାନେ ଯେ । ଆମେ କୋଉ ତାଙ୍କ ପାଖରେ ରହିବା କି ? କାଲି ତ ଖମାର ଚାଲିଯିବା । ସେ ତାଙ୍କର ଏକା ଥା'ନ୍ତୁ । କାହାକୁ ମାରିବେ ମାରୁଥାନ୍ତୁ । ଲିଟୁ ଲିଟୁ ଡାକଲେ ଯେ ଆଉ ପାଖରେ ଥିବ ଯେ, ତାଙ୍କ ବୋଲହାକ କରିବ ।

ମୁଁ ବିସ୍କୁଟ୍ ଖାଇଲି । ବୋଷେଇଘରେ ଆସନ ପକେଇ ସେ ମତେ ପରଟା-ତରକାରି ଦେଲା । କହିଲା, ଶୀଘ୍ର ଖାଇଦେଇ ଶୋଇପଡ଼ ବାପା—ଆମେ ଆଉ ଏମିତିଆ ବାପା ପାଖରେ ରହିବାନି । ଆମ ଘରକୁ ଚାଲିଯିବା ।

ମୁଁ ତାକୁ ଖୁଆଇଦବାକୁ କହିଲି । ଆଉ କେତେବେଳ ହେଇଥିଲେ, ସେ ମୋ ଉପରେ ଚଢ଼ିଥା'ନ୍ତା । କିଛି କହିଲାନି । ଖୁଆଇଦେଲା । ମୁହଁ ହାତ ଧୋଇଧାଇ ନେଇ ବସେଇଦେଲା ଖଟ ଉପରେ । ମୁଁ କାନ୍ଦୁ ଜିଦ୍ ଧରି ତାକୁ ମୋ ପାଖରେ ଶୋଇବାକୁ କହିଲି । ସେ ମତେ ପୁଣି କୋଳକରି କହିଲା—ହିଟର ଲଗିଚି ବାପା । ଭଜା ବସିଚି । ଆଉରି କେତେ କାମ ଅଛି । ଶୋଇପଡ଼ ।

ମୁଁ ତାକୁ ବାଧ କଲି ମୋ ପାଖରେ ଶୋଇବାକୁ ।

ସେ କହିଲା—ହଉ ବାପା, ତୋ ବେଳ ପଡ଼ିଚି, ଯାହା କହିବୁ, କରିବି । ଯିବି କୁଆଡ଼େ ? ହଉ ଶୋଇଲି ।

ବାପା କହିଲେ—ହେ ଟୋକା, ଆ ମୋ ପାଖକୁ ଆ । ମୋ ପାଖରେ ଶୋଇବୁ ।

ରାଗରେ ମୁଁ କହିଲି—ନା; ମୁଁ ତମ ପାଖରେ ଆଉ ଶୋଇବିନି । କହିଲି ସିନା, ହେଲେ ବାପାଙ୍କ ବାଁ ହାତରେ ନ ଶୋଇଲେ ମତେ ଭଲ ଲାଗେନା । ମୋ କଥା ଶୁଣି ବାପା ହସିଲେ । ମୋତେ ବି ହସ ମାଡୁଥିଲା । ତାଙ୍କ ପାଖକୁ ଯିବାକୁ ମନ ହେଉଥିଲା । ହେଲେ ମିଛରେ ତାଙ୍କ ହାତଟାକୁ ପେଲିଦେଲି ।

ମା' କହିଲା—ବୁଝିଲ, ପିଲାଟାକୁ ତମେ ଯେମିତି ମାରୁଚ ନା, ଫଳ ପାଇବ ଯେ ଦିନେ । ଟିକିଏ ବି ଉପ୍ରୋଧ ରଖୁନ । ଗୋରୁଗାଈଙ୍କୁ ବି ଏମିତି ପିଟନ୍ତିନ । ପିଲାଲୋକ, ସେ କ'ଣ ଜାଣିଚି । ତମେ ବୁଢ଼ା ହେଇ ତ କ'ଣ କରୁଚ କିଚ୍ଛି ବୁଝିପାରୁନ ।

ବାପା କହିଲେ—ବୁଝିଲ, ତମେ ତା ମୁହଁ ବଢ଼େଇଚ । କଉଚ କାହାକୁ ?

ମା' କହିଲା—ମୁଁ ନା ତମେ ? ମୋ ପାଖରେ ତ ସେ ଜମାରୁ ଏମିତି ହଏନା । ତମରି ପାଖକୁ ଆସିଲେ ତା'ର ସବୁ ଖୋଇ ବାହାରେ । ତମେ ତ ତାକୁ ପ୍ରଥମରୁ ଆକଟ କରିବନି । ରାଗିଯାଇ ଖାଲି ମାରିବ । ଏଠି ପୁଳାଏ ପିଲା ପାଇ ଯାଉଚ, ଖେଳୁଚ । ପିଲାଲୋକ ଆଉ କ'ଣ ଖେଳନ୍ତାନି ? ଘରେ ବସିଥାନ୍ତା ? ତମ ସାଙ୍ଗମାନେ ତ ଚବିଶ ଘଣ୍ଟା ତାସ୍ ବାଡ଼ୋଉଛନ୍ତି । ସେ କ'ଣ ଦେଖୁନି ? ବେଶୀ ମାଡ଼ ଦେଲେ ପିଠେଇଦବ । ଆଉ ମାରିବନି । କଥାରେ ଅଛି—ଉଞ୍ଚେଇଥିବ, ବାଡ଼େଇବନି । ଏତିକି କ'ଣ ଜାଣିନ ?

"ହଉ ଥାଉ ଥାଉ, ସେତିକି ଥାଉ । ପୁଣି ଗୁଣମଣିଙ୍କର ମୁହଁ ବଢ଼ିଯିବ ।"

"ମୁଁ ଯଦି ତା ମୁହଁ ବଢ଼ୋଉଚ, ତମେ ତମ ପୁଅକୁ ସମାଳ । ପାଖରେ ରଖ ।"

ବାପା ପୁଣି ହସିଲେ । କହିଲେ—ହଇଓ ମୋ ପାଖରେ କ'ଣ ଅଛି ଯେ, ତମ ଗୁଣମଣିଙ୍କୁ ସମାଳିବି ? ତମ ପାଖରେ ତ ସବୁ । ଛ'ବରଷର ବୁଢ଼ା ହେଲାଣି, ଅଭ୍ୟାସ ଗୁଡୁନି । ସବୁବେଳେ ଉଣ୍ଡାକୁଚ । ମା', ପୁଅ ସବୁ ସମାନ ।

ବାପାଙ୍କ କଥା ଶୁଣି ମା' ବି ହସିଲା । ମୁଁ ମା' ମୁହଁକୁ ଚାହିଁଲି । ହସିଲି । ତା ପଣତରେ ମୁହଁ ଗୁଞ୍ଜିଦେଲି ।

ସେ କହିଲ—ହେଇ ଦେଖ, ଲିଟୁ ହସିଲାଣି । ଯା’ ବାପା, ବାପାଙ୍କ ପାଖରେ ଶୋଇପଡ଼ । ମୋ ବାପା ପରି । ମୁଁ ଯାଏ । କେତେ କାମ ପଡ଼ିଛି ।

ମା’ ଉଠି ବସିଲା । ବାପା ମୋତେ ତାଙ୍କ କୋଳକୁ ଟାଣିନେଲେ । ମୋତେ ବାଁ ହାତ ଉପରେ ଶୁଆଇ ମୁଣ୍ଡବାଳକୁ ସାଉଁଳଦେଲେ । ମୋ ଆଖି ବୁଜି ହେଇଗଲା । ସେ ମୋ ଗାଲ ଆଉ ମଥାରେ ଚୁମା ଦେଲେ । ମୁଁ ମୁହଁ ବୁଲେଇଦେଲି । ହାତରେ ଗାଲ ଆଉ ମଥାକୁ ଜୋର୍‌ରେ ପୋଛି ପକେଇଲି ।

ସେ ପୁଣି କହିଲେ—ହେଇ ଆଗ ଲିଟୁ ହସିଲା ରେ । ଟିକିଏ ହସିଦେଲୁ ବାପା । ହସ ।

ମୁଁ ହସିଲି । ସେ ମୋ ଓଠ ପାଖରେ ତାଙ୍କ ଗାଲ ରଖି କହିଲେ—ଟିକିଏ ଗେଲ କରିଦେଲୁ ବାପା । ଟିକିଏ ।

ରାଗରେ ମୁଁ ତାଙ୍କ ଗାଲକୁ ଟିକିଏ କାମୁଡ଼ିଦେଲି । ସେ ରାଗିଲେନି । ମୋ ବାଳ ସାଉଁଳିଦେଇ କହିଲେ—ଆଛା ବାପା, ତୁ କାହିଁକି ଏତେ ଦୁଷ୍ଟ ହଉଚୁ, କହିଲୁ ? ତୁ ପରା ସୁନା ପୁଅ । ସୁନା ପିଲାମାନେ କ’ଣ ଦୁଷ୍ଟ ହ’ନ୍ତି ? ତୁ ପରା କହୁଥିଲୁ ବାପାମା’ଙ୍କ କଥା ମାନିବୁ ବୋଲି ? ଯିଏ ସେମାନଙ୍କ କଥା ନ ମାନେ ସେ ଗ’ ପିଲା । ଗ’ ପିଲାମାନଙ୍କୁ ଠାକୁର ରାତିରେ ବାଡ଼ାନ୍ତି । ସେମାନଙ୍କୁ କେହି ଭଲ ପାଆନ୍ତିନି । ତୁ କହ—ତୁ ସୁନା ପିଲା ନା ଗ’ ପିଲା ?

ମୁଁ କହିଲି—ମୁଁ ଖାଣ୍ଟି ସୁନାପିଲା । ବୋଉ କହିଛି ।

ବାପା କହିଲେ—ଆଉ ଦୁଷ୍ଟ ହବୁ ? ବୋଉ କ’ଣ ତତେ ଚଗଲା ହବାପାଇଁ କହିଥିଲା ?

ମୁଁ କହିଲି—ନା, ଆଉ ଦୁଷ୍ଟ ହେବିନି । ବୋଉ ତ ତମକୁ ମନା କରିଥିଲା ମତେ ମାରିବାକୁ । ତମେ ବଡ଼ ପିଲା ହେଇ ବୋଉ କଥା ମାନୁନ । ତମେତ ଗ’ ପିଲା । ମତେ କାହିଁକି ମାରୁଚ ? ବୋଉ ତମକୁ ମାରୁଚି କି ?

ବାପା ହସିଲେ । କହିଲେ—ଦୁଷ୍ଟ ପିଲାମାନେ ମାଡ଼ ଖା’ନ୍ତି । ମୁଁ କ’ଣ ଦୁଷ୍ଟ ହଉଚି, ବୋଉ ମତେ ମାରିବ ? ତୁ ଦୁଷ୍ଟ ନ ହେଲେ, ତୋ ପାଇଁ କେତେ ଜିନିଷ ଆଣିବି ।

ମୁଁ କହିଲି—ହଁ, ଭାରି ଆଣିଲାବାଲା । ମୋପାଇଁ ତ କିଛି ଆଣୁନ । ଖାଲି ସବୁବେଳେ ମିଛ କହୁଚ । ବାପା ମିଛୁଆ ।

ବାପା କହିଲେ—ତୋର କ'ଣ ସବୁ ଦରକାର କହ । ଶୁଣେ ଆଗ ।

ମୁଁ କହିଲି—ମେଙ୍କି, ଚୂମୁକି, ଊଜୁଙ୍କ ନନା ଘର କେତେ ଜିନିଷ ଅଛି । ସ୍କୁଟର, ଟି.ଭି., ଜୋତା, ମୋଜା, କେତେ ଜାମାପଟା, ଖାଇବା ଟେବୁଲ୍, ଡ୍ରେସିଂ ଟେବୁଲ୍ । ଆମର ତ କିଛି ନାହିଁ । ତମେ ତ ମା'କୁ, ମତେ ଜମାରୁ ବଜାର ବୁଲେଇ ନଉନ । ଖେଳନା କିଣିଦଉନ । ସିନେମା ଦେଖେଉନ । ଖାଲି ବହି କିଣିବ ଆଉ କହିବ—ମନଦେଇ ପାଠ ପଢ଼ ।

ବାପା କହିଲେ—ତୁ ଆଗ ବହୁତ ପାଠ ପଢ଼ । ବଡ଼ ମଣିଷ ହ । ତା'ପରେ ସବୁ ଜିନିଷ ଆଣିବା ।

ତମେ ତ କଉଚ ମୁଁ ବଡ଼ ହେଲିଣି । ମୋ ମୁଣ୍ଡକୁ ତ ହାତ ପାଉଚ ।

—ଆଉରି ବଡ଼ ହେଇଯା ।

କେତେ ବଡ଼ ହେବ ଯେ ଆଉ । ତାଳଗଛ ଭଳିଆ ? ତମେ ଆଗ କୁହ ମୋପାଇଁ ସାଇକେଲ୍, ଟି.ଭି., ଜୋତା, ସ୍କୁଟର ଆଣିବ କି ନା ।

ଆଣିବା । ସବୁ ଆଣିବା । ଏବେ ତ ପଇସା ନାହିଁ । ମାଗଣା କିଏ ଦବ ?

ତାଙ୍କ ପାଖରେ ପଇସା ଅଛି । ତମ ପାଖରେ ନାହିଁ କେମିତି ? ତମେ, ମା', ସମସ୍ତେ ତ କଲେଜରେ ଚାକିରି କରଚ । ତମେ ମିଛୁଆ ।

ନାଇଁରେ ବାପା । ଘରେ ପରା ତୋ ବୋଉ, ସାନବାପା, ଜେଜାନାନୀ, ସମସ୍ତେ ଅଛନ୍ତି । ସେମାନଙ୍କୁ ତ ଦବାକୁ ପଡ଼ିବ । ନ ଦେଲେ ଖାଇବେ କ'ଣ ?

ମେଙ୍କି ବାପାଙ୍କର କ'ଣ କେହି ନାହାନ୍ତି ?

ହଁ ଥିବେ । ମୁଁ ଜାଣିନି । ଥାଉ । ଶୋଇପଡ଼ । କାଲି ଦରମା ପାଇଲେ ତୋ ପାଇଁ ଜୋତା କିଣିଦବା ।

କାଇଁ ତମ ପାଖରେ କ'ଣ ପଇସା ନାଇଁକି ?

ନାଇଁ ପରା । ଦରମା ପାଇଲେ ସିନା ପଇସା ହବ । ସବୁଦିନେ ଦରମା ମିଳେନା । ମାସରେ ଥରେ ମିଳେ ।

ସବୁଦିନେ ତ ଦରମା ମିଳେନା । ତମେ ସବୁଦିନେ କାଇଁକି କଲେଜ ଯାଉଚ ? ଯୋଉଦିନ ଟଙ୍କା ମିଳିବ, ସେଇଦିନ ଯିବ ।

ମୋ କଥା ଶୁଣି ବାପା ଖୁବ୍ ଜୋର୍‌ରେ ହସିଲେ । କହିଲେ—ତୁ ବଡ଼ ହଅ ଆଗ । ସବୁ କଥା ଜାଣିବୁ ।

ବାପାଙ୍କ ହସ ଶୁଣି ମା' ଆସି ତାଙ୍କ ପାଖରେ ବସିଲା । ବାପା ଯେମିତି ମୋ କଥା ତାକୁ କହିଛନ୍ତି—ସେ ବି ଜୋର୍‌ରେ ହସିଲା । କହିଲା—ତମ ପୁଅର ଗୁଣ ଦେଖ । ପଚାରି ପଚାରି ତମ ମୁଣ୍ଡ ଖରାପ କରିଦେବ । ମତେ କ'ଣ କମ୍ ହଇରାଣ ହରକତ କରୁଚି ? ସବୁବେଳେ ଖାଲି କଉଚି—ଚାଲ ବାପାଙ୍କ ପାଖକୁ ପଳେଇବା । ମୁଁ ତ ତା ପାଖରେ ଏକୁଟିଆ ରହିବିନି । ମେଙ୍କି, ଫୁଲୁ, ମାମିନା, ଝୁଲୁଲର ମା'ମାନେ ତ ଚାକିରି କରି ନାହାନ୍ତି । ତୁ କାଇଁକି କରିବୁ ? ବାପାଙ୍କ ପାଖରେ କାଇଁକି ରହୁନୁ ? କୁହ କ'ଣ ବା ଉତ୍ତର ଦେବ ?

ମା' କଥା ଶୁଣି ମୁଁ କହିଲି—ତୋର ତୁ ଚାକିରି କରୁନୁ । କର । ମୁଁ କ'ଣ ମନା କଲିକି ? ଚାକିରି କରିବ । ଯାହା ମାଗିଲେ ଦବନି । ଖାଲି ମାରିବ । ବଡ଼ ପାଟି କରିବ ।

ମା' କହିଲା—ଥାଉ ବଦମାସି ସେତିକି ଥାଉ । ଶୋଇପଡ଼ । କାଲିକି ଜୋତା କିଣିବା ।

ମୁଁ କହିଲି—ନାଇଁ, ମୋର ସେ ଜୋତାଫୋତା ଦରକାର ନାହିଁ । ମୋର ମେଙ୍କିପରିକା ଭଉଣୀଟିଏ ଦରକାର । ମୁଁ ତା ସାଙ୍ଗରେ ଖେଳିବି । ଆମେ ସାଙ୍ଗ ହୋଇ ସ୍କୁଲ୍ ଯିବୁ । ମୁଁ ସବୁବେଳେ ତାକୁ କହୁଚି—ଯା, ଡାକ୍ତରଖାନାରୁ ଭଉଣୀଟିଏ ଆଣିବୁ । ଯାଉଚି । ଆଉ ଆଣୁନି । କି ଯେ ମା' । ଛି । ମୋ କଥା ଶୁଣି ମା' ବାପାଙ୍କ ମୁହଁକୁ ଚାହିଁଲା । ବାପା ବି ଚାହିଁଲେ ମା' ମୁହଁକୁ । ଦିହେଁ ମୁହଁ ଚାହାଁଚାହିଁ ହୋଇ ହସିଲେ ।

ମା' କହିଲା—ହଉ ଗୁଣମଣି, ଫେଚକାମି ସେତିକି ଥାଉ । ଏବେ ଶୋଇପଡ଼ । ରାତି ପାହିଲେ ଖମାର ଯିବା । ଶୁଅ ।

ମୁଁ କହିଲି—ବାପା, କାଲି ସକାଳେ ମେଙ୍କି ଆସିଲେ ତାକୁ କହିବ—ଲଢୁ ନାହିଁ । ଖମାର ଗଲାଣି । ଛୁଟି ହେଲେ ପୁଣି ସେ ଆସିବ । କହିଛି—ସେ ଆସିଲେ ସାଙ୍ଗ ହୋଇ ଖେଳିବ । ତୋପେଇଁ କାନ୍ଧିଆ ଆଣିବ । ତୁ ଚଗଲା ହବୁନି ।

ମୋ କଥା ଶୁଣି ବାପା ପୁଣି ହସିଲେ । ମା' ବାପାଙ୍କ ମୁହଁକୁ ଚାହିଁଲା । ସେ ମୁରୁକେଇ ମୁରୁକେଇ ହସିଲା ।

କହିଲା—ତମେ ସବୁ ହସିକି ମନେ ଉଷ୍ମବ କରୁଚ । ନିଦ ହଉନି । କେମିତି ଶୋଇବ ?

ବାପା ତାଙ୍କ ବାଁ ହାତ ଉପରେ ମୋ ମୁଣ୍ଡ ରଖି ଥାପୁଡ଼େଇଲେ । ମୁଁ ଆଖି ବୁଜିଲି । ଭାରି ଭଲ ଲାଗିଲା ।

## ॥ ତିନି ॥

ପୁଅମାନଙ୍କ ଚାଇ ଝିଅମାନଙ୍କ ସାଙ୍ଗରେ ଖେଳିବାକୁ ମତେ ଭାରି ଭଲ ଲାଗେ । ଆଉ ସେମାନେ ବି ମୋ ସାଙ୍ଗରେ ଖେଳିବାକୁ ଭଲ ପା'ନ୍ତି । କୁନିକୁନି ପିଲାମାନଙ୍କୁ ଦେଖିଲେ ମତେ ଏତେ ଭଲ ଲାଗେ ଯେ, ସେମାନଙ୍କୁ ଚିପିଚାପି ପକାଏ । ଚୁଟ୍‌ଚୁକିନା ଚୁମୁଟିଦିଏ । ଗାଲ ଚିପିଦିଏ । କୁତୁକୁତୁ କରେ । ଶୁଆଇପକେଇ ଗୋଡ଼ ତଳିପା ସଲସଲ କରେ । ସେମାନଙ୍କୁ ଦେଖିଲେନା ମୋ ପାଠପଢ଼ା ପୂରା ବନ୍ଦ । ମା' କହେ ଛୁଆରଙ୍କୁଣା । ହେଲେ ପିଲାମାନଙ୍କ ସାଙ୍ଗରେ ଖେଳିଲେ ବାପା ମା' ଏତେ ରାଗନ୍ତି କ'ଣ ପାଇଁ ? ସେମାନଙ୍କୁ ହସେଇଲେ ରାଗିବେ, କନ୍ଦେଇଲେ ବି ରାଗିବେ । ସେମାନଙ୍କ ସାଙ୍ଗରେ ବଡ଼ ପାଟିରେ କଥା ହେଲେ ବାପାଙ୍କର ତ କ'ଣ ହେଇଯାଏ । ମୁଣ୍ଡ ଗରମ । ଆଉ କ'ଣ କାଛୁବାଡ଼ଙ୍କ ସାଙ୍ଗରେ ପାଟି କରିବ, ଖେଳିବ ?

ଟିକିଏ ପାଟି କଲେ କହିବେ—ହେଏକ୍ ଟୋକା, କ'ଣ ହଉଚ ? କାଇଁକି ସେମିତି ସବୁବେଳେ ଖାଲି ଗୋଟାଏ ଚବର ଚବର ହଉଚୁ ? ପାଟି ବନ୍ଦ କର । ନଇଲେ ଦେଖିବୁ । ମା'କୁ କହିବେ—କିଓ ତମକୁ ପରା ମନା କରୁଚ ଉଷ୍ମବ କରନା । ମା'ପୁଅ ହାଳକଯାକ କିଛୁ କରେଇ ଦେବନି । ମଲି ମଣିଷ । ଶଳା; କୋଉଠୁ ଏତେ ପାଟି ଆଣିଚ କେଜାଣି ?

ବାପା ଆମ ଉପରେ ପାଟି କଲେ ମତେ ବିରକ୍ତ ଲାଗେ । ଏତେ ବଡ଼ ପିଲା ହେଲେଣି, କେମିତି ଜାଣିପାରୁ ନାହାନ୍ତି ଖେଳିଲାବେଳେ ପାଟି କରିବାକୁ ହୁଏ । ଜାମାପେଣ୍ଟ ମଇଳା ହୁଏ । ଦେହ ହାତରେ ଧୂଳି ଲାଗେ ।

ପିଲାବେଳେ, ସେ ଯେମିତି ଜମାରୁ ପାଟି କରି ଖେଳୁ ନ ଥିଲେ, ଧୂଳିଧୂଳା ହଉ ନ ଥିଲେ । କ'ଣ ସେତିକି—ମତେ ଏକୁଟିଆ ଖେଳେଇ ଦେବେନି କି କାହା ସାଙ୍ଗରେ ଖେଳିବାକୁ ଗଲେ ପାଟି କରିବେ । ଏମିତିଆ ମା'ଟା ଯେ, ଖାଲି ସବୁବେଳେ ଜଗିକରି ବସିଥିବ । କହିବ—ଏଇଠି ଥିବୁ, ଆଉ କୁଆଡ଼େ ଯିବୁନି । କୁଆଡ଼େ ଚାଲିଗଲେ—ଏଡ଼େ ପାଟି କରି ଲିଟୁରେ ଲିଟୁରେ ବୋଲି ଚଲେଉଥିବ ଯେ, ସବୁଆଡ଼ କମ୍ପୁଥିବ । କେତେ ବଡ଼ ପାଟି । ବାପା ତାକୁ କହିବେ—ରାହାବାଳୀ । ପୁଣି କହିବେ—ବାପାରେ ଛୁଞ୍ଚି ସୂତା ଆଣେ, ମା' ପାଟିଟାକୁ ସିଲେଇ କରିଦବ । ସେ ଖମାରରୁ ଡାକିଲେନା, ମତେ ବରଗଡ଼ରେ ଶୁଭେ । ବାପାଙ୍କ କଥା ଶୁଣି ମା' ଚିଡ଼େ । ବାପା ତାକୁ ଆଉରି ଚିଡ଼ାନ୍ତି । ମୁଁ ବାପାଙ୍କୁ ଛୁଞ୍ଚିସୂତା ଦିଏ । ମା' ହାତ ଧରି ଟାଣେ । ଆଉ ମାଡ଼ ଖାଏ ।

ବରଗଡ଼ରେ ଥିଲାବେଳେ ବେଳେବେଳେ ମା'କୁ କହେ—ମା'ଲୋ, ଆମର ଖମାର ପଳେଇଯିବା ଚାଲିଆଲେ । ବାପା ଖାଲି ସବୁବେଳେ ପାଟି କରୁଛନ୍ତି । ମୋର ଡିଷ୍ଟର୍ବ ହଉଚି । କି ଯେ ବାପା ।

ପୁଣି କହେ—ମା'ଲୋ, ମତେ କୁନି ପୁଅ କି ଝିଅଟିଏ ଆଣିଦଉନୁ, ଖେଳନ୍ତି । ସମସ୍ତଙ୍କ ଘରେ ଭାଇ ଅଛନ୍ତି, ଭଉଣୀ ଅଛନ୍ତି, ଆମ ଘର ଶୂନ୍ ଶୂନ୍ ।

ମୋ କଥା ଶୁଣି ମା' ହସେ । କହେ, ହଉ ଆଣିବା । ଏଇଥର ଭାଇ କି ଭଉଣୀଟିଏ ନେଇ ଖମାର ଯିବା ।

ତା' କଥା ଶୁଣି ମୁଁ ଭାରି ଖୁସୀ ହେଇଗଲି । କହିଲି—ତୁ କ'ଣ ଦେଖିପାରୁନୁ କି, କାଲି ମଉସା ଘର ଫାଗୁନା, ଫୁଲୁନା, ଜଲନାମ୍ନି, ମିତାଲୀନାମ୍ନି—ଏମିତି ଚାରିଜଣ । ନାଆକମଉସାଙ୍କର ଜେଲୀନାମ୍ନି, ବଙ୍କୁଲୁ । ଏବେ ଆଉ ଗୋଟାଏ କୁନି ଝିଅ ଆଣିଛନ୍ତି । ତା ନାଁ ମିଲି । ଅନୁମାଉସୀଙ୍କର ପୁଅ ନାଁ ପପ୍ପୁ । ଏବେ ଡାକ୍ତରଖାନାରୁ ଆଉ ଗୋଟାଏ ନୂଆ ପୁଅ ଆଣିଛନ୍ତି । ଭାରି ଗୋରା ହେଇଚି । କ'ଣ ତା ନାଁଟି ? —ହଁ ତପୁ । ବଢ଼ିଆ ନାଁ । ଆମ ବହିରେ ପରା ପଢ଼ାହଉଚି—

ଭାଇଭଉଣୀ କହି କାହାଣୀ ।
ଭାରତବାସୀ ଭାରି ସାହସୀ ।

ତୁ ଦେଖୁନୁ କି, ଟସରେ ନା, ଭାଇଭଉଣୀ ହାତ ଧରାଧରି ହୋଇ ସ୍କୁଲ ଯାଉଛନ୍ତି । କେତେ ସୁନ୍ଦର ଦିଶୁଛନ୍ତି । ତୁ ମତେ ଡାକ୍ତରଖାନାରୁ ଭାଇ କି ଭଉଣୀଟିଏ ଆଣି ନ ଦେଲେନା ଆଉ ସ୍କୁଲ ଯିବିନି । ସେ ବହି ପଢ଼ିବିନି । କେତେ ଏକୁଟିଆ ଯିବି କହୁନୁ ?

ମୋ କଥା ଶୁଣି ମା' ହସିଲା । ବାପାଙ୍କୁ କହିଲା—ହଇଓ ଶୁଣୁଛ, ତମ ପୁତ୍ରମଣିଙ୍କର କଥା । ସେ ଆଉ ପଢ଼ିବାକୁ ଯିବେନି । କ'ଣ ବୁଝ ତା' କଥା ।

ବାପା ମତେ ପାଖକୁ ଡାକିଲେ । ମୁଁ ଗଲି । କହିଲେ—ହଇରେ, ତୁ ପଢୁଚୁ ନା ବଦମାସି କରୁଛୁ । ଯା ପଢ଼ । ପୁଅ କଥା କହି ଶିଖିଛି । ସକାଳଟାରୁ ଚବର ଚବର ହଉଚି । ହଉ ଯା, ଏଇଥର ଗଲାବେଳକୁ ଭାଇ କି ଭଉଣୀଟିଏ ନେଇ ଯିବୁ । ଆଣିବା । ତୁ କଣ୍ଢେଇ କରି ଖେଳିବୁ ।

ମୁଁ ଖେଳିବି, ତମେ ଖେଳୁ ନ ଥିଲ କି ? ମୋ ଗୃହପାଳି ବୋଉ ତ କହେ, ତମେ ମଝିଆବାପା, ସାନବାପାଙ୍କ ସାଙ୍ଗରେ ସବୁବେଳେ ଖେଳୁଥିଲ । ସେମାନଙ୍କୁ ମାରୁଥିଲ । କନ୍ଦେଉଥିଲ । ମଝିଆବାପାଙ୍କୁ ସକାଳେ ମାଇଲେ ନା, ସେ ସନ୍ଧ୍ୟା ପର୍ଯ୍ୟନ୍ତ ସେମିତି କାନ୍ଦୁଥିଲେ । ଖାଲି ଉଁଉଁ ହଉଥିଲେ । କୁଟା କି ଖଡ଼ିକା ଧରି ତମକୁ ଛୁଇଁଦେଲେ ଯାଇ ତାଙ୍କ କାନ୍ଦ ବନ୍ଦ ହଉଥିଲା । ସେ ଭାରି ବୋକା । ଉଷାନାନୀକୁ ତମେ ଜମା ମାରୁ ନ ଥିଲ । ଉଷାନାନୀ କେତେ ସୁନ୍ଦର । ତମେ ତମ ପିଲାବେଳେ ଖେଳୁଥିବ । ମୋ ବେଳକୁ କିଛି ନାହିଁ । ମୁଁ ଖେଳିଲେ -- ପାଠ ।

ବାପାକହିଲେ—ହଉ ବାପଧନ, ଆଜି ତୋ କଥା ବୁଝିବା । ତୁ ଯାହା କହିବୁ, ଡାକ୍ତରଖାନାରୁ ସେଯା ଆଣିବା । ଠିକ୍ ଅଛି, କହ, ତୋର ଭାଇ ନା ଭଉଣୀ କ'ଣ ଦରକାର ?

ତାଙ୍କ କଥା ଶୁଣି ମୁଁ କ'ଣ କହିବି, ଜାଣିପାରିଲିନି ।

ମା' କହିଲା—କିରେ, ଭାରି ତ ଭଡ଼ ଭଡ଼ ହଉଥିଲୁ । ବାପା କ'ଣ ପଚାରୁଛନ୍ତି କହୁନୁ । ବସିଛୁ କାହିଁକି ?

ମୋ ପାଖରେ ମା' ବି ଆସି ବସିଲା । ବାପା ଆଉ ମା' ମୋର ଦୁଇ ପାଖରେ । ବାପା କହିଲେ—ହଉରେ ବାପ, ଭାଇକି ଭଉଣୀ ଆସିଲେ

ତୋର ଏ ହାକମାତ ଚଳିବନି । ଦାଦାଗିରି ଯିବ ଯେ । ଘରକୁ ଯାହା ଆସୁଛି—ଭାଗ ହେଇଯିବ । ତୋର ଅଧାକୁ ତା'ର ଅଧା । ଆଉ ଛେନାଗୁଡ଼ ଖାଇବୁ ।

ମୁଁ କହିଲି—ନାଉ, ଭଲ ହବ । ମୋ ଭଉଣୀ ।

ସେ ମୋ ପାଖରେ ଶୋଇବ ।

"ଶୋଉ । ମୁଁ ତା ପାଖରେ ଶୋଇବି । ଆମେ ଦୁଇଜଣ କୁଣ୍ଢାକୁଣ୍ଢି ହେଇ ଶୋଇବୁ ।"

"ମା' ତାକୁ ବେଶୀ ଗେହ୍ଲା କରିବ ।"

"କରୁ । ମୋର କ'ଣ ହେଲା ?"

"ତୁ ତାକୁ ଚିଡ଼େଇଲେ, ଚିମୁଟିଲେ, ମାଇଲେ—ତୋ ପିଠିରେ ଗୋପାଳ ବସିବ ।"

"ମୁଁ ତାକୁ କାହିଁକି ମାରିବି କି ? ତାକୁ ତ ଖେଳେଇବି । ତା ସାଙ୍ଗରେ ମଜା କରିବି ।" "ମା ଦଦ ସବୁ ଖାଇଦବ । ତୁ ଆଉ ପାଇବୁ ଯେ । ପାଇବୁ ପାନେ । ପୁଅର ମଜା ବାହାରିଯିବ । ଥଣ୍ଡା ହେଇଯିବୁ ।"

"ମୋର ମୁଁ ହେଲେ ହେବ । ତମର କ'ଣ ଗଲା ଯେ ।"

"ହଉ ବାପା, କିଛି ଯିବନି ଯେ, ତୁ ଆଗ କହ, ତୋର କ'ଣ ଦରକାର । ତୁ କହିଲେ ଯାଇ ମୁଁ ଡାକ୍ତରଖାନା ଯିବିନା ?"

ମୁଁ କିଛି କହିଲିନି । ଗୁମ୍ ମାରି ବସି ରହିଲି ।

ମା' ମୁହଁ ଛୁଆଁଡ଼ି କହିଲା—କିରେ କହୁନୁ । ଭାରି ଭଡ଼ ଭଡ଼ ହଉଥିଲୁ । ପାଟି ଫିଟୁନି କି ? କଉନୁ କାହିଁକି ?

ମୁଁ ମା' ମୁହଁକୁ ଚାହିଁଲି । ପୁଣି ଚାହିଁଲି ବାପାଙ୍କ ମୁହଁକୁ । ଦେଖିଲି—ଦୁଇଜଣଯାକ ମୁହଁ ଚାହାଁଚାହିଁ ହେଇ ମୁରୁକି ହସୁଛନ୍ତି । ବାପାମା' ଏମିତି ହସାହସି ହେଲେ ମତେ ମଜା ଲାଗେ ।

ବହିଟାକୁ ବନ୍ଦ କରିଦେଲି । କହିଲି—"ମୁଁ କାନରେ ଚୁପ୍ ଚୁପ୍ କରି କହିବି ।" ଆସ୍ତେକିନା ମା' ପିଠିରେ ନାଉ ହେଇ ତା କାନରେ କହିଲି—"ଭାଇ, ତୁ ବାପାଙ୍କୁ କହନା ।"

ପୁଣି ବାପାଙ୍କ ପାଖକୁ ଗଲି । ତାଙ୍କ କାନରେ ଚୁପ୍‌ଚାରେ କହିଲି—"ଭଉଣୀ, ତମେ ମା'କୁ କହିବନି ।"

ବାପା ମୋ କଥା ଶୁଣି ଠୋ ଠୋ ହୋଇ ହସିଲେ । କହିଲେ—ବୁଝିଲ, ପୁଅର ଭଉଣୀ ଦରକାର । ବହିରେ ପଗ୍ ଲେଖା ହୋଇଚି । ପୁଅ ମନଦେଇ ପଢ଼ୁଚି । ଭାଇ ହେଲେ, ଖାଇବା ଟେଜରେ ବାଣ୍ଟି ବସିବ ।

ବାପାଙ୍କ କଥା ଶୁଣି ମା' ହସିଲି ।

ମୁଁ କହିଲି—ନାଇଁଲୋ ମା' । ବାପା ଏଡ଼େ ବଡ଼ ପିଲା ହୋଇ ମିଛ କଉଚନ୍ତି । ମତେ କହିବେ—"ସତ କହ ।" ନିଜେ ମିଛ କହିବେ । ଛି । ଏଇ ପାଠ ପଢ଼ିଛନ୍ତି ? ମୁଁ ତୋ କାନରେ କ'ଣ କହିଲି କହିଲୁ ? କହିନି, କହିନି 'ଭାଇ' । ସତକଥା କହ ?

ମା' କହିଲି—କାଇଁ, ନା ତ, ମୁଁ କିଛି ଶୁଣିନି । ତୁ ତ କୁର୍ କୁର୍ କରିଦେଲୁ । ବାପାମା' ମୋ କଥା ଶୁଣି ପୁଣି ହସିଲେ ।

ମୁଁ ରାଗିଯାଇ କହିଲି—ବାପା ମିଛୁଆ । ମା' ବି ମିଛେଇ । ବୋଉ ମିଛେଇ, ବଡ଼ବାପା ବି ମିଛୁଆ । ତମେ ସମସ୍ତେ ମିଛୁଆ । ମୋର କିଛି ଦରକାର ନାଇଁ ଯା । ତମର ତମେ ଯାହା ଆଣୁଚ ଆଣ । ମୁଁ ମୋର ମେଙ୍କି ସାଙ୍ଗରେ ଖେଳିବ । ପିଙ୍କିକି ଝିଅ କରିବୁ । ତମ କଥା ଆଉ ଜମାରୁ ମାନିବିନି । ବୃନ୍ଦପଲ୍‌ବୋଉକୁ କହିଦେବି—ବାପାମା' ମନାକଲେ ମୋ ପାଇଁ ଭାଇ କି ଭଉଣୀ କିଛି ଆଣିବେନି । ତମେ କାନ୍ଦିବ । ମୋର କ'ଣ ହୋଇ-ଯାଉଚି ?

ମୁଁ ଖେଳିବାକୁ ଚାଲିଗଲି ।

## ॥ ଚାରି ॥

ଏଇ କେଇଦିନ ହେଲା ମା' ମତେ ଜମାରୁ ପଦାକୁ ଛାଡୁନି । ଭିତରପଟୁ ଚାବି ପକେଇଦଉଚି । ମେଙ୍କି, ପପୁ, ଜଲି, ମିଲି କିଏ କବାଟ ବାଡ଼େଇ ଡାକିଲେ କଉଚି—ମା'ରେ ପରେ ଆସିବ ଯା' । କେତେ ପଢ଼ୁଚି, କେତେ ଶୋଇଛି, କେତେ ଖାଉଚି, ଗାଧୋଉଚି । ମା'ଟା କେମିତି କେଜାଣି, ଆଦୌ ମୋ ମନକଥା ବୁଝିପାରୁନି । ଘର ଭିତରେ କେତେ ଏକୁଟିଆ ପଢ଼ିବି, ଖେଳିବି, ବସିବି, ଶୋଇବି ? ବାହାରେ ଟିକେ ବୁଲିଆସିଲେ, ଆଉ

କାହା ସାଙ୍ଗରେ ଖେଳିଲେ ମିନା ମଜା ଲାଗେ, ମନଟା ଭଲ ଲାଗେ । ନିଜେ ଯିବନି କି ଆଉ କାହାକୁ ଛାଡ଼ିବନି । ସବୁବେଳେ ଖାଲି ମିଛ କହିବ । କହିବ—ଦିନରେ ଖମାରରେ ତୁ ସ୍କୁଲକୁ ଯାଉଥିଲୁ । ଏଠିତ ଯାଉନୁ । ଘରେ ବସି ପଢ଼ । ଖେଳବେଳେ ଖେଳ, ପାଠବେଳେ ପାଠ । ସ୍କୁଲ୍‌ରେ କ'ଣ ସାରେ ସବୁବେଳେ ପଢ଼ାନ୍ତି ? ସାରେ ଟିକେ ପଢ଼େଇଦେବେ, ତା'ପରେ ଆମେ ଖେଳିବୁ । ପଢ଼ା ଖେଳ ଏମିତି ଲାଗିଥାଏ ନା ଆଉ । ମା' ଯେମିତି ସ୍କୁଲ୍‌ରେ ପଢ଼ିନି । ଛି ।

ଆଜି ମେଙ୍କି ଯେମିତି କବାଟ ବାଡ଼େଇ ଡାକିଚି ନା, ମୋ ମନଟା କ'ଣ ହେଇଗଲା । ମା' ଝରକା ପାଖରେ ଠିଆହେଇ ତାକୁ କହିଲା—ଲିଟୁନନା ଏବେ ପଢ଼ୁଚି । ଯା' ପରେ ଆସିବୁ ।

ମୁଁ କହିଲି—ମା'ଲୋ, ତୁଟା ନା ଭାରି ମିଛେଇ । ବଡ଼ ଲୋକଟା ହେଇ ମିଛ କଉଚି ।

ସେ କହିଲା—କାଇଁ କ'ଣ ହେଲାକି ? ତୁ କେମିତି ଜାଣିଲୁ ?

''ମେଙ୍କି ଆଇଲାବେଳେ ମୁଁ ତ ତୋ ପାଖରେ ଠିଆ ହେଇଥିଲି । ତୁ କେମିତି କହିଲୁ ମୁଁ ପଢ଼ୁଚି ବୋଲି । କାଲି କହୁଥିଲୁ—ଲିଟୁ ଶୋଇଚି । ମୋତେ କହିବ ମିଛ କହିବା ମହାପାପ, ଆଉ ନିଜେ ସବୁବେଳେ କହୁଥିବ ।

ସେ ମୋ କାନ ମୋଡ଼ିଦେଇ କହିଲା—ବାପା ଭଲଆ ଏତେ ବୁଦ୍ଧି ବାହାର କରନା । ତୋ କାମ ତୁ କର ।

ରହ, ବାପା କଲେଜରୁ ଆସନ୍ତୁ, କହିବି ମା' ତମକୁ ମିଛୁଆ କହୁଥିଲା । ଆଚ୍ଛା, ଆମ ଘରକୁ ଆଉ କିଏ ଆସି ଡାକିଲେ—ତୁ ଚୁଂକିନା କବାଟ ଖୋଲିଦଉ । ମୋ ସାଙ୍ଗମାନେ ଆସିଲେ କାଇଁକି ମନା କରିଦଉ ? ବଡ଼ମାନଙ୍କର ସାଙ୍ଗ ଭଲ, ମୋ ସାଙ୍ଗମାନେ କ'ଣ ଖରାପ ? ତୁ ସେମାନଙ୍କୁ ମିଛ କହିବୁ । ବାପା ତତେ କହନ୍ତିନି ତୋର ହା' ନାହିଁ ବୋଲି । ସତରେ ତୋର ହା' ନାହିଁ । ଛି ।

ତା' କାନ ଧରି ପଚାରିଲି—ମା'ଲୋ, ଏ ହା'ମାନେ କ'ଣ ?

ସେ ତା କାନ ମୋ ହାତରୁ ଟାଣିନେଲା । ମୋତେ ଠେଲିଦେଇ କହିଲା—ମତେ କିଛି ଭଲଲାଗୁନି ବାପା । ସେମିତି ବିରକ୍ତ କରନା । ମରିଯିବି ଯେ ପାଇବୁ ପାନେ ।

ତୁ ମତେ କହୁନୁ କାହିଁକି ଯେ ? କହିଦେଲେ ତ ଆଉ ପଗ୍ଗରିବନି ।

"ହା ମାନେ ମୁଣ୍ଡ ଆଉ ଗଣ୍ଡି ।"

ତୁ ପୁଣି ମିଛ କହୁଚୁ । ତୋର ତ ମୁଣ୍ଡ ଅଛି । ମୁଣ୍ଡ ତଳ ତ ଗଣ୍ଡି । ତୋର ତ ଅଛି । ନାଇଁ କେମିତି ?

ମା ରାଗିଯାଇ କହିଲି—ବେଶୀ କଥା କହନା । ବୋପା ଆସିଲେ ପଗ୍ଗରିବୁ । ଯା' ପଢ଼ । ସ୍କୁଲକୁ ନ ଯାଇ ମତେ ହନ୍ତସନ୍ତ କରି ମାରୁଛି । ଏଇଟା ସାଙ୍ଗରେ ବକରବକର ହେଇ ମୁଣ୍ଡ ଖରାପ ହେଇଗଲାଣି । ମରିଯା'ନ୍ତି ହେଲେ । ଏମିତି ଭାଗ୍ୟ ଯେ, କେହି କୋଉଠୁ ଟିକିଏ ଆସୁ ନାହାନ୍ତି ।

ଟିକିଏ କ'ଣ ହେଲେ, ମା' ଖାଲି କହିବ—ଭଲ ଲାଗୁନି, ମରିଯା'ନ୍ତି ହେଲେ । ବାପା କହିବେ—ଭଲ ଲାଗୁନି । ମୁଣ୍ଡ ବିନ୍ଧୁଛି ।

ବାପା ଯେମିତି ଏତିକି କହିବେ, ମା' କହିବେ—କହୁନି ଚା' କରିଦିଅ ବୋଲି । ଭଲ ଲାଗୁନି, ଭଲ ଲାଗୁନି, ମୁଣ୍ଡ ବିନ୍ଧୁଚି ଏମିତି କାହିଁକି ହଉଚ ? ତମେ କ'ଣ କାହା କଥା ମାନିବ ଯେ ହବ । ଦିନକୁ ଚଉଦ ପନ୍ଦରଥର ଖାଲି ଚା' । ଚା' କମେଇଦିଅ—ମୁଣ୍ଡବିନ୍ଧା ସଫା ହେଇଯିବ ।

ବାପା ମା' କଥା ଶୁଣି କହିବେ—ଓଃ ବିରକ୍ତ କରନା କଉଚି । ଯା' ରୋଜଗାରରେ ମୁଁ ଯେମିତି ଚା' ପିଉଚି । ସବୁବେଳେ ମୋ ସେବାରେ ।

ସେ ବହି ଧରି ପଢ଼ିବେ, ନଇଲେ ଲେଖିବେ । ମା' ଚା' କରି ଦବ । ବେଶୀ ରାଗିଗଲେ ଛକରୁ ଯାଇ ଚା' ପିଇ ଆସିବେ । ମା' ପାଖରେ ଚା' କପ୍ ଧରି 'ନଉନି' 'ନଉନି' ବୋଲି କହିଲେ ବି ଚାହିଁବେନି । ସେ କାନ୍ଦିଲେ ଯାଇ ତା କଥା ଶୁଣିବେ । ବାହାରେ ଟିକିଏ ବୁଲାବୁଲି କଲେ ସିନା ଭଲ ଲାଗନ୍ତା । ସବୁବେଳେ ପଢ଼ିଲେ ଲେଖିଲେ ମୁଣ୍ଡ ବିନ୍ଧିବନି ? ବାପାଙ୍କର ଜମାରୁ ବୁଦ୍ଧି ନାଇଁ । ତାଙ୍କ ମୁଣ୍ଡରେ ବି ହା ଅଛି । ନଜର ଅଛି ବୋଲି ସିନା ମା'କୁ କହୁଛନ୍ତି । ଛି ।

ମା' ମରିଯିବି ବୋଲି କହିଲେ, ମତେ ଡରମାଡ଼େ । ତାକୁ ଉଁ କି ଚୁଁ କିଛି କହେନା । ଚୁପ୍‌ଚାପ୍ ବସିପଡ଼େ । କେତେ ଏବେ ପଢ଼ିବ ?

ସେ କାନ୍ଦିବ ବୋଲି ସିନା ବହି ଧରି ବସିଲି । ହେଲେ ମେଙ୍କି ସାଙ୍ଗରେ ଟିକିଏ ଖେଳି ଆସିବାକୁ ଇଚ୍ଛା ହଉଥିଲା ।

ମା'କୁ କହିଲି—ମା'ଲୋ, କିଛି ଭଲ ଲାଗୁନି ।

ତତେ ବି ଭଲ ଲାଗୁନି ? ଗୀ’ ପିଇବୁ ? ବାପା ଯେମିତି ପୋଡ଼ାମୁହାଁ ଇଏ ବି ସେମିତି । ଖେଳିବାକୁ ଗଲେ ଭଲ ଲାଗିବ । ମେଞ୍ଚଡ଼ ଟୋକା, ଆଉ କହିବ—ମତେ ବି ଭଲ ଲାଗୁନି । ଦେଖ ।

ମା’ଲୋ, ବାପା ତତେ ପୋଡ଼ାମୁହାଁ ଡାକନ୍ତି । ତୋର ଭଲ ମୁହଁ । ବୋଉ କହେନା ଜହ୍ନମାମୁଁ ପରି ଗୋଲ । ତତେ କାହିଁକି ପୋଡ଼ାମୁହାଁ ଡାକନ୍ତିକଲେ ?

ବାପା ଡାକନ୍ତିନା, ତୁ ଡାକୁ । ବାପ-ବୋଲକରା ପୁଅ । ବାପ ଯେମିତି ବତେଇ ଦେବେ, ମେଞ୍ଚଡ଼ ଟୋକାଖଣ୍ଡିକ ଗେହ୍ଲେଇ ହେଇ ଡାକିବ ପୋଡ଼ାମୁହାଁ । ତୁ ତ ମୋତେ ପୋଡ଼ାମୁହାଁ କହୁଚୁ । ବୋଉତ କହେ ମୋ ମୁହଁ ବାପାଙ୍କ ଭଳିଆ । ବାପା କ’ଣ ପୋଡ଼ାମୁହାଁ ?

ନା, ତୋର ସୁନା ମୁହଁ । ତୁ ଗୋଲ ବଦନ । ଚନ୍ଦ୍ରମୁଖ । ଚିର ସୁନ୍ଦର ପରି ଆଖି, ହେଲା ?

ଆଉ ବକ୍ ବକ୍ ହ’ନା ।

କାହିଁ, ତୁ ମତେ କୁନି ଭଉଣୀଟିଏ ଆଣିଦଉନୁ ? ତା’ର ସାଙ୍ଗରେ ବକ୍‌ବକ୍ ହେବ । ଖେଳିବ । ଇଏ କଣ୍ଟି କରିବନି । ବରଗଡ଼ରେ ଆସି ରହିବ । ମୋର ପାଠପଢ଼ା ବନ୍ଦ । ତୁ ଖମାର ଗୁଳୁନୁ । ମୁଁ ସ୍କୁଲ୍ ଯିବ । ଏଠି କାହିଁକି ଗୁଡ଼ିବ ଦଉଚୁ ?

ପୁଣି କହିଲା—ମା’ଲୋ, ଗାଧେଇବ । କେତେବେଳ ହେଲାଣି । ଦେଖୁନୁ ?

ସେ କଅଁଳେଇ କହିଲା—ବାପା, ଦେହଟା ଭଲ ଲାଗୁନି । ବିରକ୍ତ କରନା । ବାପା ବଜାରରୁ ଆସନ୍ତୁ, ଗାଧେଇଦେବେ । ଟିକିଏ ପଢ଼ିଦେ । ନଇଲେ ଚିତ୍ର କର ।

ଏତିକିବେଳେ କବାଟ ପାଖରେ ପାଟି ଶୁଭିଲା । ଝିଅଟିର ଧଡ଼ ଧଡ଼ କରି ଏତେ ବଡ଼ ପାଟିରେ ରମା ମଉସା କହିଲେ—ହଇଓ ସମୁଦୁଣୀ, କବାଟ ଖୋଲ । ଆମ୍ଭେ ଆସିଗଲୁ । ଆଉ ବିଳମ୍ବ ନ କର ।

ମାଗୁ ଫାଦର କହିଲେ—କିଓ ଆଈ, ଦନୁଟାରେ କାହିଁକି ଗୁଡ଼ିବ ପକେଇଚ ? କିଏ କ’ଣ ନେଇଯାଉଚି ନା କ’ଣ ? ଖୋଲ ଖୋଲ । ଅଜା ତ ସେଇଥି, କା’କୁ କହିବା ? କ’ଣ କଉଚ ମିଶ୍ରେ ?

ମା’ ତା କାନରୁ ଗୁଡ଼ିକ ଖୋଲି ମୋ ହାତକୁ ବଢ଼େଇଦେଲା ।

ଖଟ ଉପରେ ଠିଆ ହେଇ ମୁଁ ତାଲା ଖୋଲିଲି । ମାଗୁ ଫାଦର, ମଉସା, ବାପା ହାତରେ ହାଇହାଇଟା ବେଏଗ୍ ଧରି ଘର ଭିତରକୁ ପଶି ଆସିଲେ ।

ରମା ମଉସା ବେଏଗ୍ ହାଇଟା ଥୋଇଦେଇ ତଳେ କାନ୍ଥକୁ ଆଉଜି ବସିପଡ଼ିଲେ । କହିଲେ—ସମୁଦୁଣୀମ, ଟିକିଏ ଗୁ’ ପିଲାଅ । ମନ ଡାକୁଚ ।

ଆମ ବେଏଗ୍ ହାଇଟା ଏତେ ଓଜନିଆ ହେଇଥିଲା ଯେ, ଟେକି ପାରିଲିନି । ପିଣ୍ଡା ଉପରେ ଢାଳିଦେଲି । ଆମ୍ବ, କଦଳୀ, ସପୁରି, ନଡ଼ିଆ, ଖଜୁରିକୋଳି, ପନିପରିବା ଖେଳେଇ ହେଇପଡ଼ିଲା ।

ବେଷେଇଘର ଭିତରୁ ବାହାରିଆସି ମା’ ଏଢ଼େ ବଡ଼ ପାଟିରେ କହିଲା—ଏ ମେଞ୍ଚଡ଼ ଟୋକାଖଣ୍ଡକ ମତେ ମାରିଦେଲାଣି । ପାଗଳ କରିଦବ । ଦେଖୁନା, ଦୁଆର, ପିଣ୍ଡା ସାରା ପରିବା । ତମେ ସମ୍ଭାଳ ତମ ପୁଅମଣିଙ୍କୁ । ପାରିବନି ବୋଲି କହି ମୋ ପିଠିରେ ଦୁଲ୍‌କନା ବଧାଟାଏ କଷିଦେଲା ।

ମାଗୁ ଫାଦର ମା’ ଉପରେ ବିରକ୍ତ ହେଇ କହିଲେ—କଓ ସେ କ’ଣ କଲା ? ତାକୁ କାଇଁକି ମାରୁଚ । ମାଡ଼ ଶଳା ଅସଲ ଜାଗାରେ ବାଜିଛି । କ’ଣ ଅଜା ପିଠି ଦରଜ ହେଇଛି ନା ନାଇଁ ? ହଉ ଆଉ ଡେରି କାଇଁକି, ଡାକ୍ତରଖାନା ଏଥର ଯିବା ତ ? ମୁଁ ତ କହୁଛି, ଖବର ନେଇ ଗାଁରେ ବୁଢ଼ୀକୁ ଦେବ । ଆଜ ଆଉ ରକ୍ଷା ନାଇଁ ।

ମତେ କହିଲେ—କ’ଣ ଲିଟୁ ବାପା, ଡାକ୍ତରଖାନା ଯିବାଟି ? ଭାଇ ନା ଭଉଣୀ ? କ’ଣ ଆଣିବା ?

ରମାମଉସା ସେମିତି କାନ୍ଥକୁ ଆଉଜି ବସିଥା’ନ୍ତି । ତାଙ୍କୁ ଦେଖିଲେନା ମତେ ଭାରି ମଜାଲାଗେ । ବାପା, ମା, ସିଏ, ଅନୁମାଉସୀ ସାଙ୍ଗ ହେଇ ଚାଲୁଥିଲେ । ବାପାଙ୍କୁ ଡାକବେ ଗଉଣାନାମା, ମା’କୁ ଡାକବେ ସମୁଦୁଣୀ । ମା’କୁ ଖାଲି ସବୁବେଳେ କହିବେ—ସମୁଦୁଣୀମ, ଏଠି ଖାଲି ପେଟଟାରେ କାଇଁକି ରହିଛ ?

ଯେବେ ଶଳାଟା ତମକୁ ଖାଇବାକୁ ନ ଦେଇ ଶୁଖେଇ ଶୁଖେଇ କଣ୍ଢା କରିଦେଲାଣି । ପେଟ ଖଙ୍କ ପଡ଼ୁଛି । ଆମର ଘରେ ଦେଖୁନ—ଏକା ଗୋଟାଏ ରିକ୍‌ସା । ଶଳା ପାଖରେ ବସିବାକୁ ଜାଗା ହଉନି । ମଲା ପଡ଼ ମଣିଷ ।

ତାଙ୍କ ପାଟିରୁ କଥା ସରିବ କି ନାହିଁ, ଅନୁମାଉସୀ ଆମ ଘରକୁ ଆସିଲେ । କେଡ଼େ ମୋଟୀ ! ଗୋରା ତକ ତକ । କଣୁଟି କେତେ ସରୁ । ବଡ଼ିଆ ଲାଗନ୍ତି । ମତେ ଭାରି ଭଲପାନ୍ତି । ସବୁବେଳେ ଖାଲି ହସ ହସ ମୁହଁ ।

ସେ ଆମ ଘରକୁ ଆସିଲା ମାତ୍ରେଇ କହନ୍ତି—ହଇଓ ସମୁଦୁଣୀ, ଏବେ କାଇଁକି ଆସିଲ । ପେଟ ତ ଖଙ୍କ ପଡଉଛି । ହୁଣ୍ଡୀ, କଛି ଜାଣିନ ।

ମାଗୁ ଫାଦର କହିଲେ—ଜାଣି ନାହାନ୍ତି ତ ଏତେ କଥା ହେଲା କେମିତି ? ଭାରି ଭଲ ଝିଅ ତ । ଖରାପ କାମ କରିବେ ? ବୁଝିଲ ମିଶ୍ରାଣୀ, ଆଜି ଆଉ ରକ୍ଷା ନାହିଁ । ବ ରେଡ଼ି ।

ମଉସା କହିଲେ—ହଉ ତାଙ୍କର ଦାଇ ସମୁଦୁଣୀ ସେ ଘରେ କ'ଣ ହଉଛନ୍ତି ହଉଥା'ନ୍ତୁ । ଗୋଟାଏ କଖାରୁକୁ ଆଉ ଗୋଟିଏ ଭେଣ୍ଡି । ଆମର ଗୃହ ଦାଇ ବାଜି କରିଦବା । କ'ଣ ଗଉରୀ ନାମ୍ନୀ, ବସିବ ନା ନାହିଁ ?

ସେ ଯେମିତି ଏତିକ କହିଛନ୍ତି, ମୁଁ ସାଙ୍ଗେ ସାଙ୍ଗେ କହିଲି—ମଉସା ମୁଁ ଯାଉଛି ନେଇ ଆସିବି । କାଲିମଉସାଙ୍କୁ ଡାକି ଆଣିବି ।

ତାସପାଇଁ ମୁଁ ଦୋଉଡ଼ି ଯାଉଥିଲି । ମଉସା ମତେ ଚଟ୍‌କିନା ଧରି ପକେଇଲେ । କୋଳରେ ବସେଇଲେ । ମୁଣ୍ଡ ଆଉଁସିପକେଇ କହିଲେ— ନାଇଁଲେ ବାପା, ତୋ ପେଟୀମାଉସୀ ମତେ ଖାଇଯିବ । ମରିଯିବ । କ'ଣ ସମୁଦୁଣୀ, ଗରମ ପାଣି ଟିକେ ହଉ । ଏ ଶୀତଳ ପ୍ରାଣ ବଞ୍ଚୁ ।

ବାପା କହିଲେ—ବାପାରେ, ପରବା ଫଳଗୁଡ଼ାକ ସଜାଡ଼ିଦେ । କାଲି ତୋ ମା'ର ଓଷା ପର୍ବ । ଅନୁମାଉସୀ, କାଲିମାଉସୀ, ବଡ଼ବୋଉ, ସମସ୍ତେ ଆସିବେ । ପୂଜା କରିବେ । ତୋ ମା' ନାଁ କ'ଣ କହିଲୁ ?

ଚଟ୍‌କିନା ମୁଁ କହି ପକେଇଲି—ହଇଓ ଶୁଣୁଚ ।

ମୋ କଥା ଶୁଣି ସମସ୍ତେ ଏକାସାଥିରେ ହସିଉଠିଲେ । ରମାମଉସା ମତେ କୁଣ୍ଢେଇ ପକେଇଲେ । କହିଲେ—ସାବାସ୍ ବେଟା, ବୋପାମା'ଙ୍କର ନାଁ ରଖିବୁ । ଓଲୁ କୋବଟାଏ ହବୁ ।

ଅନୁମାଉସୀ ବିରକ୍ତ ହୋଇ କହିଲେ—କାଇଁକି ଡ୍ରାମା କରୁଚ କହିଲ । ଏଇଟା କ'ଣ ଷ୍ଟେଜ୍ ବୋଲି ଭାବିଲ ?

ବାପା କହିଲେ—ସେଇ ନାଟୁଆ ପାଲରେ ପଡ଼ି ତ ଏତେକଥା କଲି । କଉଚ କାହାକୁ । କାଲି ସାବିତ୍ରୀ ବ୍ରତଟି । ତମ ସାବିତ୍ରୀ

ସମ୍ମୁଦୁଣୀଙ୍କୁ ହଳଦୀ, ଚୂଆ, ଚନ୍ଦନ ମାରି ଗାଧେଇପାଧେଇ, ନୁଗା ପିନ୍ଧେଇ ଷୋଡ଼ଶୋପଚାରରେ ପୂଜା ଅର୍ଚ୍ଚନା କରିବ । ଯାହା ଆଣିଥିବ—ଖାଇ ନ ପାରିଲେ, ମୁହଁରେ ମୁକ ମାରି ସାବାଡ଼ କରିଦବ । ଶଳା ସାକ୍ଷାତ ସାବିତ୍ରୀ, ମୋ ଭାଗ୍ୟ । ଅମର । ବୁଝିଲ ?

ମା' ଆମ ଆଗରେ ଚା' ଆଣି ଥୋଇଲା । ମାଗୁ ଫାଦର କହିଲେ—କ'ଣ ଆଜ୍ଞ, ଯିବାଟି ନା ନାଇଁ ?

ମଉସା କହିଲେ—କ'ଣ ସମ୍ମୁଦୁଣୀ, ଯିବା ତ ? ଡାକ୍ତରବାବୁ ଯେତେବେଳେ କହିଲେଣି, ନ ଗଲେ ରକ୍ଷା ନାଇଁ । ଯାଇ ସମ୍ମୁଦୁଣୀଯାକ ସାଙ୍ଗସୁଙ୍ଗା ହୋଇ ଚାଲ । ଡଜନଟା ରିକ୍ସା ଡାକିବା । ଗୋଟାଏରେ ସମ୍ମୁଦୁଣୀ, ମୁଁ । ତମେ ଏକା ଗୋଟାଏରେ । ଆଉ ଗୋଟାକରେ ମାଗୁବାବୁ, ଗଉଣ୍ଣିନାନୀ । ଉଠାଣିରେ ମାଗୁବାବୁ ତମ ରିକ୍ସାକୁ ପେଲିଦେବେନି କି ? ଆମର ଗାର୍ଜନ ଯେତେବେଳେ ।

ମାଗୁ ଫାଦର ପୁଣି ମା'କୁ କ'ଣ ଚୁପ୍ ଚୁପ୍ କରି କହିଲେ । ମା' କହିଲା—ଡାକ୍ତରଖାନା କାଇଁକି ଯିବି । ଟିକିଏ ଭଲ ଲାଗୁନି । କହିବନି ଯେ ସେମିତି ହଉଚି ।

ମା' ଆଉ ମାଉସୀ ରୋଷେଇଘର ଭିତରେ କ'ଣ କଥା ହେଲେ । ମୁଁ ପରିବାପାଚିଆ ପାଖରେ ବସିଗଲି ।

ମାଉସୀ ବାହାରକୁ ଆସି କହିଲେ—ଆଜି ତାସ ଫାସ ଖେଳ ବନ୍ଦ । ସବୁବେଳେ ଗୋଟାଏ ପାଲି ଲଗେଇଚନ୍ତି । ଆଜି ଯଦି ପାଟି କରିଛ, ସଜାଡ଼ିଦେବି ।

ମାଉସୀ ଚାଲିଗଲା ପରେ ମଉସା ମା'କୁ ହାତଯୋଡ଼ି କହିଲେ—ସମ୍ମୁଦୁଣୀ, ତମକୁ ଶତକୋଟି ଦଣ୍ଡବତ । ଗଉଣ୍ଣିନାନୀକୁ ଛାଡ଼ିଦବ । ମୁଁ ଶୀଘ୍ର ଗାଧେଇପଡ଼ୁଚି । ତମର ଡାକ୍ତରଖାନା ଯିବାର ହେଲେ—କଲେଣି ଖାଲି କରିଦବୁ । କ'ଣ ଭଲ ପାଇଚ କି ?

ମଉସାମାଉସୀ ଚାଲିଗଲା ପରେ ମା'କୁ ପଚାରିଲି—ମା'ଲୋ, ପପୁ ବାପା ବୋଉ ତତେ ସମ୍ମୁଦୁଣୀ ଡାକୁଛନ୍ତି କ'ଣ ପାଇଁ ? ଗୁନ୍ଦପଲି ବୋଉ ତତେ ସମ୍ମୁଦୁଣୀ ଡାକୁଛନ୍ତି କ'ଣ ପାଇଁ ? ଗୁନ୍ଦପଲି ବୋଉ ସିନା ବଣ୍ଣ

ବାପା ବୋଉଙ୍କୁ ସମୁଧି ବ ସମୁଦୁଣୀ ଡାକେ । ବୁଢ଼ାବୁଢ଼ୀ ସିନା ସେମିତି ଡକାଡକି ହନ୍ତି । ମତେ ଏ ଡାକ ଭଲ ଲାଗୁନି ।

ମା' କହିଲା—କାହିଁ ଆମେ ଆଉ କ'ଣ କ ?

ଛି । ତୁ କାହିଁକି ବୁଢ଼ୀ ହବୁ ? ବାପା କାହିଁକି ବୁଢ଼ା ହେବେ ? ତମ ବାଳ ପାଚିଲାଣିକି ? ସବୁଯାକ ଦାନ୍ତ ତ ଅଛି । ପଡ଼ିନି ।

ପାଖରେ ମାଗୁ ଫାଦର ମୁହଁ ନେଫେଡ଼ି କହିଲେ—ନାଇଁ ତୋ ବାପା ବୋଉ ଗଜା ଚୋକାଚୋକି ।

ମୁଁ ରାଗିଯାଇ କହିଲି—ତମେ ବୁଢ଼ା, ମଦର ବୁଢ଼ୀ ।

ମୋ କଥା ଶୁଣି ଫାଦର ହୋ ହୋ ହେଇ ହସିଲେ ।

ମା କହିଲା—ଆମେ ସବୁ ସାଙ୍ଗ ହେଇ ପଢ଼ୁଥିଲୁ ତ । ସେଇଥିପାଇଁ ସେମିତି କଥା ହଉ ।

ବଡ଼ମାନେ କ'ଣ ସବୁବେଳେ ଖାଲି ଭୁତା ବେବେ କରି କଥା ହନ୍ତି ? ଆପଣ, ତମେ, ଆଜ୍ଞା, ଏମିତି ସବୁ କହନ୍ତୁନା ଆଉ । ମା'ଲୋ, ବାପା, ମଉସା ନା ଖାଲି ସବୁବେଳେ ଶଳା ଶଳା ହଉଛନ୍ତି । ଶଳା ମାନେ କ'ଣ ସମୁଧି ? ମୁଁ ତତେ ଶଳା କହିଲେ, ତୁ କାହିଁକି ମତେ ମାରିବୁ ? ତମେ ବଡ଼ ଲୋକମାନେ କୁହାକୁହି ହବ । ଆମେ ଗ୍ରେଟ ପିଲା ହେଲୁ ବୋଲି ମାରିବ । ମା'ଲୋ, ମୁଁ ଏଥର ମିକି, ମେଙ୍କି, ତପୁକୁ ଶଳା କହିବି ତ ?

ମୋ କଥା ଶୁଣି ଫାଦର ହସିଲେ । ମା' ତାଙ୍କୁ କହିଲା—ବୁଝା ଏଥର ପ୍ୟା'କୁ । ଯୋଉଠୁ ଯାହା ଦେଖିଲା, ଶୁଣିଲା, ଆସି ପଚାରିବ । ନ କହିଲେ କୋବଲେଇ କୋବଲେଇ ମାରିଦବ । ଓଃ, ଏମିତିଆ ଛୁଆ କୋଉ ଘରେ ନ ଥିବେ । ମୋ ମୁଣ୍ଡ ଖରାପ କରିଦେଲାଣି ।

ମା' କଥା ଶୁଣି ମୁଁ ପୁଣି ପଚାରିଲି—କାଲି ତାସ ଖେଳିବେଳେନା ପପୁବାପା ମଉସା ବାପାଙ୍କ ନାଁରେ ବଡ଼ିଆ ଗୀତ ବୋଲୁଥିଲେ । ତୁ ଜାଣିନୁ କଲୋ ?

"ଆମ କଲେମା ମଉଡ଼ ମଣି ମୋ, ମୋର ଗଉରିନାମ୍ନି ।

ଗଧପରି ରଡ଼ି ଛାଡ଼ିଲେ କମ୍ପିବ ସାରା ଧରଣୀ, ଗୋ ଗଉରିନାମ୍ନି ।"

ମାଆଲୋ, ମଉସା ହାରିଗଲା ପରେ ଏମିତି ଅଭଦର ଭାଷାରେ ଶୋଧିଲେନା । ମାଗୁ ଫାଦର ବି ଭଲକରି ଖାଇଛନ୍ତି ଯେ । ମଉସାନା

ରଗିଯାଇ ତାସମୁଠାଟା ଚିରି କୁଟିକୁଟି କରିଦେଲେ । ମାଉସୀ ଯେମିତି ଗାଳି ଦେଲି—ସମସ୍ତେ ଥଣ୍ଡା । ଆଜି ନା ନୂଆ ତାସ ଆସିବ ।

ମୋ କଥାଶୁଣି ମା' ବାପାଙ୍କୁ କହିଲି—ହଇଓ ତମେ ଖେଳୁଚ କାଇଁକି ? ଏମିତି ହଉଚ କାହିଁକି ? ପୁଅ କ'ଣ କହୁଚ ଶୁଭୁଚଟି ? ସବୁକଥା ତାକୁ ଶିଖାଅ । ବାପପରି ହବତ··· ।

ମା' ବାପାଙ୍କୁ ଗାଳିଦେଲେ ମୋର ସାହସ ବଢ଼ିଯାଏ । ମୁଁ ପୁଣି କହିଲି---ତୁ କହିଲୁ ମା', ବାପା ବଡ଼ପିଲା ହେଇ ଖେଳିବେ । ଗୃ' ପିଇବେ । ମୁଁ ସେଇ କାମ କଲେ—ତମେ ସମସ୍ତେ ମତେ ଗାଳିଦବ । ମାରିବ ।

ମାଗୁ ଫାଦର ଥିଲେ ବାପାମା' ମତେ କିଛି କହନ୍ତିନ । ମତେ ମାରିଲେ କି ଧମକେଇଲେ ଫାଦର ତାଙ୍କ ଉପରେ ରାଗନ୍ତି ।

ମୋ କଥା ନ ଶୁଣିଥିଲି ପରି ବାପା ଫାଦରଙ୍କୁ କହିଲେ—ମାଗୁ ତମେ କାଲି ଘରକୁ ଯିବ ତ ?

ସେ କହିଲେ—ଆଗ ଡାକ୍ତରଖାନାରୁ ଲିଟୁପାଇଁ ଘରି କି ଭଉଣୀ ନ ଆଣିଲେ ଘରକୁ ଯିବିନି । ଖବର ଦେଇ ନ ଗଲେ ବୁଢ଼ୀ ମତେ ରଖିବ ତ ? ମତେ ତ ବାସିଲାଣି । ଆଉ ଡେରି ନାହିଁ । ବୁଢ଼ୀ ଘରି ବ୍ୟସ୍ତ ହେଉଥିବ ।

ମୁଁ କହିଲି—ଫାଦର, ବୋଉକୁ କହିବ—ତୋ ବୁଢ଼ା କହିଚି ଯିବାପାଇଁ । ତାକୁ ଆଣିବନା ?

ମୋ କଥା ଶୁଣି ମା' ହସି ହସି କହିଲି—ହଁ ବୁଢ଼ୀ ନ ଆସିଲେ ଚଳିବ ? ଏ ବେହ୍ୟା ତା ଗୁଣ୍ଡରେ ଟିଙ୍କ ଭଳିଆ ନାଖିଥିବ ।

ତୁ ତ ତୋ ଦଦ ଦଉନୁ । ମୋ ବୋଉଠୁ ମୁଁ ଖାଇଲି ତୋର କ'ଣ ଗଲା ? ତୁ କାଇଁକି ସେଦିନ ବୋଉ ଦଦ ଖାଉଥିଲୁ ? ବାପାଙ୍କୁ କହିଦେବି, ଜାଣିଥା ।

ମୋ କଥା ଶୁଣି ବାପା, ମା', ଫାଦର ସମସ୍ତେ ହସିଲେ । ବେଶୀ ହସିଲେ ଫାଦର । ମୋ ପିଠି ଥାପୁଡ଼େଇ କହିଲେ—ସାବାସ୍ ବେଟା ।

ମା' ଆମପାଇଁ ଖାଇବାକୁ ବାଢ଼ିଲି । ମୁଁ ଫାଦରଙ୍କ ସାଙ୍ଗରେ ଖାଇ ବସିଲି । ଖାଇସାରି ହାତ ଧୋଇଚୁ କି ନାଇଁ ପପୁବାପା ମଉସା ଆସି ହାଜର । ହାତରେ ନୂଆ ତାସମୁଠା ।

ମା' କହିଲା—ହଇଓ, କାଲି ତ ଶୋଧାଶୋଧି ହଉଥିଲି । ଆଜି କ'ଣ ପିଠାପିଠି ନା ଆଉ କ'ଣ ?

ମଉସା କାନ ଧରି କହିଲେ—ସମୁଦୁଣୀ, କାନ ଧରୁଛି । ମୋ ଘଣ । ତମ ସନ୍ତାନବାନ ଘଣ । କାଲି ତମକୁ ଭଲକି ଉତ୍ତମମଧ୍ୟମ ଦବୁ । ଆଜି, ଆଜିକି ଗଉଣିନାମାକୁ ଛାଡ଼ିଦିଅ । ବାଜିଏ । ବାଜିକରେ ଶଳାକୁ ନଣ୍ଡା କରି ଛାଡ଼ିଦେବି । ବେଶୀ ଡେରି ହବନି । ଯୁଆକୁ ଏକା ତ ପାରିବନି । ଅଜା ନାତି ହଲକଯାକ ସାଙ୍ଗ ହେଇ ମାରିବେ ।

ଫାଦର, ବାପା, ଗୁହ୍ମାରି ବସିଥିଲେ । ମଉସା ବାପାଙ୍କ ହାତ ଧରି କହିଲେ—ଗଉଣିନାମା, ତତେ ଦଣ୍ଡବତ, ଟିକିଏ ଉଠ ପେଟ ଫାମିଁଲିଣି । ବାପା ଉଠିଲେ ।

ମା' କାନ୍ଦ କାନ୍ଦ ହେଇ କହିଲେ—ତମେ ତ ଯାଉଚ । ମୁଁ ତମ ପୁଅମଣିଙ୍କୁ ପାରିବିନି । ତମ ପଛେ ପଛେ ସେ ବି ଯିବ । ଯାଅ, ବାପପୁଅ ସାଙ୍ଗହେଇ ମାତିବ ।

ମଉସା ମୁହଁ ହଲେଇ କହିଲେ—କିଓ ସମୁଦୁଣୀ, ସେଟୁ କି କଥା ? ତମ ଗୃବ କୁଆଡ଼େଗଲା ? ଠିକିଁଦଉନା ? ସବୁ ତ ବନ୍ଦ ।

ବାପା, ଫାଦର ଶୀଘ୍ର ଶୀଘ୍ର କାଇଁକି ଯେ ଯାଉନାହାନ୍ତି—ମତେ ରାଗ ଲାଗିଲା ।

ସେମାନେ ଗଲା ପରେ ମା' ଘର ଭିତରୁ ଗୃବ ନେଇ ଦେଲା । ତକିଆ ତଳେ କାଣ୍ଡି ରଖିଲା । ମତେ ପାଖରେ ଆଣି ଶୁଆଇ ପକେଇଲା । ଆଉ ମୁଁ ଶୋଇବା ଆଗରୁ ସେ ଶୋଇ ସାରିଥିଲା ।

ମା'ଟା ସବୁଦିନେ ସେମିତି ।

## ॥ ପାଞ୍ଚ ॥

ସକାଳୁ ସକାଳୁ ମା'କୁ ଏମିତି ଦେଖି ମତେ ଭଲ ଲାଗିଲାନି । ସେ ପିଣ୍ଡା ଉପରେ କାନ୍ଥକୁ ଆଉଜି ବସିଥିଲା । ମୁହଁ ଭରି ଶୁଖିଲା । ସ୍ୱଭସାର

ଯେମିତି ଶୋଇନ । ବାପା ବସିଥିଲେ ତାଙ୍କ ଆରାମ ଚେୟାରରେ, ଦୁଆର ମଝିରେ, ରଜନୀଗନ୍ଧା ଆଉ ଗୋଲାପ କୁଣ୍ଡ ପାଖରେ । ସେ ବି ଚୁପ୍‌ଚାପ୍ ।

ମୁଁ ପିଣ୍ଡାରେ ବସି ତାକୁ ପାଉଡର ବ୍ରସ୍ ଦେବାକୁ କହିଲି ।

ସେ ଉଁଉଁ ହେଇ କୁନ୍ଥେଇଲା । ସେଇଠି ଶୋଇପଡ଼ିଲା । କହିଲା— ବାପାଲୋ, ତୁ ଟିକେ ଯାଇ ସେ ଘରୁ ଦେଇ ଆ ।

ତା' ଦେଖାଦେଖି ମୁଁ ବି ସେଇଠି ଉଁଉଁ ହେଇ ଗଡ଼ିପଡ଼ିଲି ।

ସେ ବିରକ୍ତ ହେଇ କହିଲା—ଯେ ଟୋକାଟା ମତେ ରଖିବନି । ଯା' ଜାଲାରୁ ମୁଁ ମରିଯା'ନ୍ତି ହେଲେ । ରଇଥା, ମରିଗଲେ କେତେ ଆଦେଶ ଦବୁ ।

ମା' କଥା ଶୁଣି ବାପା ଠିଆ ହେଲେ । ବାପାଙ୍କ ଦେଖାଦେଖି ମା' ବି ଉଠିଲା । କହିଲା—ତମେ ବସ । ମୁଁ ଚା' ଆଣୁଚି । ଫୁଟିଲାଣି ।

ସେ ସେଷେଇଘରୁ, ବ୍ରସ୍, ପାଉଡର, ଜିଭଛେଲା ଆଣିଦେଲା । ଫାଦର ବି ଆସିଲେ । ସେ ସବୁଦିନେ ବାପାଙ୍କ ସାଙ୍ଗରେ ଚା' ପିଇବାକୁ ଆସନ୍ତି । ଘର ଭିତରୁ ଚେୟାର ଆଣି ବାପାଙ୍କ ପାଖରେ ପକେଇ ବସିଲେ । ମା' ଚା' ଆଣିଦେଲା । ତା' ହାତରୁ ଚା ନଉ ନଉ କହିଲେ—କ'ଣ ଆଣ୍ଟି, କାଲି ସିନା ଠକିଦେଲ, ଆଜି ମିଠା ସିବ କୁଆଡ଼େ ? ଆରେ, ପିଲାଟାକୁ ସବୁଦିନେ ମିଛ କହୁଛନ୍ତି । ଆଜି ତାକୁ ଖାଇ କି ଭଜଣୀଟିଏ ଆଣି ନ ଦେଲେ ମୁଁ ଗାଁକୁ ଯିବନି ।

ମା' ହସି ହସି କହିଲା—ହଁ ତମକୁ ତ ସବୁ ବାସୁଛି । ଅଭଙ୍କତା ଅଛିନା । "ହଉ ଦେଖିବା । ବାଜି ରହିଲା" ।

ଚା' ପିଇସାରି ବାପା, ଫାଦର ବାହାରକୁ ଗଲେ । ମା' ସେଷେଇ ଆରମ୍ଭ କଲା । ସାବିତ୍ରୀ ଓଷା । ତା'ର ଉପାସ । କାଲି ବଜାରରୁ କେତେ ଫଳ ଆସିଛି । ଆଜି ଭୋଗ ହବ । ପପୁବାପା ମଉସା କହୁଥିଲେ ମା'କୁ କାଠନୀ ପୂଜା କରିବେ । ସେ ସାବିତ୍ରୀ ଦେବୀ । ମଜା ହବ ।

କିଛି ସମୟ ପରେ ମା' କାଳିମଉସାଘର ମାଉସୀକୁ ଡାକିଆଣିବାଲାଗି ମତେ ପଠେଇଲେ । ମୁଁ ଦଉଡ଼ିଯାଇ ମାଉସୀକୁ ଡାକିଆଣିଲି । ସେମାନେ କ'ଣ କଥା ହେଲେ । କାଳିମଉସା, ରମାମଉସା, ଅନୁମାଉସୀ ବି ଆସି

ପହଞ୍ଚିଗଲେ । ରମାମଉସା କହିଲେ—ହଇଓ ସମ୍ବୁଦୁଣୀ, ପେଟ ତ ଖଙ୍କ ପଡ଼ୁଛି, ଯିବ କୁଆଡ଼େ ? ବାଈ ଆଣିଚ ନା କ’ଣ ?

“ତମକୁ କିଏ ଭଦରଲୋକ କରୁଚ, ଯା’ ବାହାରକୁ ଯା’ ।” ମୁହଁଛୁଆଁଡ଼ କହିଲେ ଅନୁମାଉସୀ ।

ମଉସା ଇଲୋ ବାପାଲୋ କହି କାନ ଧରି ପଳେଇଗଲେ । ତାଙ୍କ ବାଗ ଦେଖି ଆମେ ସମସ୍ତେ ହସିଲୁ । ମାଉସୀ କହିଲେ—ସବୁବେଳେ ଖୁଲଚ ଡ୍ରାମା । ଛି ।

କାଲମାଉସୀ ଘର ଭିତରୁ କ’ଣ ସବୁ ଜିନିଷ ଆଣି ବ୍ୟାଗ୍‌ରେ ପୂରେଇଲେ । ତାଙ୍କ ଘରକୁ ଯାଇ ଆଉ ଗୋଟାଏ ବ୍ୟାଗ୍‌ରେ ବି କ’ଣ ସବୁ ଆଣିଲେ । କାଲମଉସା ଗଲେ ରିକ୍‌ସା ଡାକିବାକୁ ।

ବାପା ଆଉ ଫାଦର ଯେମିତି ଆସି ପହଞ୍ଚିଛନ୍ତି, ମାଉସୀ କହିଲେ—କ’ଣ ଅଜାନାଡି ନଗ୍ର ପରିକ୍ରମା କରି ଫେରିଲେ ? ଭଲ ଅଜାନାଡି ହେଲେ ଏଠି ଯୁଟିଛ ? ମା’ ଦୀର୍ଘନିଃଶ୍ୱାସ ପକେଇ କହିଲା—ହଁ, ତାଙ୍କର କ’ଣ ହେଇଯାଉଚ ? ମରିଗଲେ, ଆଉ ଗୋଟାଏ ନେଇଆସିବେ ।

ଫାଦର ତା କଥା ଶୁଣି ହସିଲେ ।

ମା’ ଆଉ ମାଉସୀ ଯେମିତି ରିକ୍‌ସାରେ ବସିଛନ୍ତି, ମୁଁ ତାଙ୍କ ପାଖରେ ଠିଆ ହେଲି । ଯିବାପାଇଁ କାନ୍ଦିଲି । ମା’ ମୋ ମୁଣ୍ଡ ଆଉଁସିଦେଲା । ଗେଲ କଲା । କହିଲା—ବାପାରେ ପପୁ, ମେଙ୍କି, ମାମୁନ୍, ମିତାଲି ସମସ୍ତେ ଅଛନ୍ତି । ତୁ ସେମାନଙ୍କ ସାଙ୍ଗରେ ଖେଳୁଥା । ମୁଁ ସାଙ୍ଗେ ସାଙ୍ଗେ ପଳେଇ ଆସିବି । ମା’କୁ ଆଉ କାହା ସାଥିରେ ଯିବାର ମୁଁ ଦେଖି ନ ଥିଲି । ସେ ଯେତେବେଳେ ଯାଏ, ମୁଁ ଥାଏ । ମତେ କାନ୍ଦ ଲାଗିଲା । ଫାଦର କହିଲେ—ବାପା, ଆମେ ଡାକ୍ତରଖାନା ଯାଉଚୁ, ତୋ ପାଇଁ ଭାଇ କି ଭଉଣୀ ଆଣିବୁ । ଆଗରୁ ସେମାନଙ୍କୁ ଟଙ୍କା ଦେଇ ଆସିଛୁ । ଏବେ ନ ଗଲେ ଦେବେନି । ତୁ କହ—ତୋର ଦରକାର ନାଇଁ ତ ? ଠିକ୍ ଅଛି—ମା’ ଯିବନି ।

ରମାମଉସା ମା’କୁ କହିଲେ—ସମ୍ବୁଦୁଣୀ, ଅସଲ ମାଲ ଛାଡ଼ିଦେଇ ଗଲେ । ତମ ପେଟରେ ତ କିଛି ନାହିଁ । ଖାଲି । ଆମର ତ ଗୋଟାଏ ରିକ୍‌ସା । ଟ୍ରିକ୍‌ଟାଏ । ଭାଉଜ ତ ତମ ପାଖରେ ବସିଛନ୍ତି । ଇଏ ଆଉ

ଗୋଟାଏରେ ବସୁ । ମୁଁ ପଛରୁ ପେଲିବି । ହଲେ ନବା, ପୁଞ୍ଜାଏ ଆଣିବା । ଝାମେଲି ଏକାଥରେ ସଫା ।

ତାଙ୍କ କଥା ଶୁଣି କାଲିମାଉସୀ କ'ଣ କହିଲେ କେଜାଣି—ସମସ୍ତେ ହସିଲେ । ମୁଁ ବି ହସିଲି । ମଉସା ମତେ କାଖ କରି କହିଲେ—ଥା ବାପା, ତୋ ପେଟିମାଉସୀ କ'ଣ ତତେ ଧରିପାରିବ ? ଆ, ଖେଳୁଥା । ମୋ ସାଙ୍ଗରେ ସ୍କୁଟର୍‌ରେ ବସି ଯିବୁ । ବଜାରରୁ ବି ମଜା ମଜା ଜିନିଷ ଆଣିବା ।

ତାଙ୍କ କଥା ଶୁଣି ମୋ କାନ୍ଦ ବନ୍ଦ ହୋଇଗଲା । ମା', ମାଉସୀ, ବାପା, ଫାଦର ରିକ୍‌ସାରେ ଡାକ୍ତରଖାନା ଚାଲିଗଲେ । ମେଙ୍କି, ପିଙ୍କି, ବାପୁନା, ଜଲି ସମସ୍ତେ ରିକ୍‌ସା ଚାରିପାଖରେ ଠିଆ ହୋଇଥିଲେ । ସମସ୍ତେ ଯାଇ ଆମ ପିଣ୍ଡାରେ ବସିଲୁ । ଖେଳ ଆରମ୍ଭ ହେଲା । ମେଙ୍କି ହେଲା ମା', ମୁଁ ହେଲି ବାପା ।

ମେଙ୍କି କହିଲା—ତୁ ଜାଣିଚୁନା ଲିଟୁ, ମୋ ମାଉସୀ ଡାକ୍ତରଖାନାରୁ ଝିଅଟିଏ ଆଣିଥିଲା । ତା ପେଟ କଟା ହୋଇଥିଲା ବୋଲି ମୋ ବୋଉ କହୁଥିଲା । ତୋ ମା'ର ପେଟ କଟା ହବ । ଭିତରୁ ଭାଇ କି ଭଉଣୀ ବାହାରିବ ।

ମା'ର ପେଟ କଟା ହବା କଥା ଶୁଣି ମତେ କାନ୍ଦ ଲାଗିଲା । ତାକୁ କହିଲି—ତୁଟା ସୁଉଦୁ ମିଛେଇ । ମା'ତ କହିଚି, ଡାକ୍ତରଖାନାରୁ ଭାଇ କି ଭଉଣୀ ଆଣିବ ।

—ତୁ ଜମା ଜାଣିନୁ । ପେଟ ଭିତରେ ଭାଇ କି ଭଉଣୀ ଥା'ନ୍ତି । କାଟିଦେଲେ ବାହାରିପଡ଼ନ୍ତି ।

ରାଗରେ ମୁଁ ମେଙ୍କିକି ଠେଲିଦେଲି । କହିଲି—ପେଟ କାଟିଦେଲେ ରକ୍ତ ବାହାରିବ । ମରିଯିବ । ତୁ ଦେଖିନୁ, ମାଛକୁ କାଟିଦେଲେ କେମିତି ରକ୍ତ ବାହାରେ ଆଉ ସେ ମରିଯାଏ ।

—ତୁ ଜାଣିନୁ । ମୋ ବାପାବୋଉ ଏଇ କଥା ହଉଥିଲେ । ମୁଁ ଶୁଣିଚି ।

—ତୁ ମିଛେଇ । ତୋ ବାପାବୋଉ ସମସ୍ତେ ମିଛେଇ । ତୋ ସାଙ୍ଗରେ କଟି ପକେଇଦେବି ଜାଣିଥା । ଆଉ ଖେଳିବିନି । ମୋ ବାପା କହୁଥିଲେ, ଟଙ୍କା ହେଲେ ଡାକ୍ତରଖାନାରୁ ଭାଇ କି ଭଉଣୀଟିଏ

କଣିଆଣିବେ । ତମ ଘରେ ତ ବେଶୀ ଟଙ୍କା ଅଛି । ଆଗରୁ ଝିଅଟାଏ କଣିଆଣିଲ । ଆମର ଏତେ ପଇସା ନ ଥିଲା । ବାପା, ମା ରଖୁଥିଲେ । ମୁଁ ଯେମିତି ବେଶୀ ଅଇନ କଲି, ସ୍କୁଲକୁ ଯିବନି ବୋଲି କହିଲିନା, ଡାକ୍ତରଖାନା ଯାଇଛନ୍ତି ଆଣିବାପାଇଁ ? ତୁ କ'ଣ ଜାଣିଚୁ । ପିଲାଲୋକ ।

ମେଙ୍କି ରାଗିଯାଇ କହିଲା—ମୁଁ ପିଲା ଲୋକ । ମୋ ବାପା ବୋଉ ମିଛୁଆ ? ତୁ ମିଛୁଆ, ତୋ ବାପାମା ମିଛୁଆ । ତମେ ସମସ୍ତେ ମିଛୁଆ । ମୁଁ ଆଉ ତୋ ସାଙ୍ଗରେ ଖେଳିବିନି ।

ମେଙ୍କି କଥାରେ ମୁଁ ଆଉରି ରାଗିଗଲି । ତାକୁ ଠେଲିଦେଇ କହିଲି—ଯାଆବେ, ତୋ ସାଙ୍ଗରେ କଟି ପକେଇଦେବି, ଜାଣିଥା । ମୋ ମା' ପେଟ କାଇଁକି କଟାହବ ? ପେଟ ଭିତରେ କ'ଣ ଏତେ ଏତେ ବଡ଼ ପିଲା ଥା'ନ୍ତି ? ପେଟ ଭିତରେ ଖାଇବା ଜିନିଷ ଥାଏ । ଘୁଅ, ମୂତ ଥାଏ । ତୁ ଦୁଣ୍ଡୀଟା । କିଛି ଜାଣିନୁ । ମୋ ଗୃନ୍ଦପଲିବୋଉ କଉଥିଲିନା, କଉଥିଲି—ମୋ ବାପାନା ବଡ଼ିପାଣିରେ ଭସି ଆସିଥିଲେ ।

ମେଙ୍କି କହିଲା—ବଡ଼ିପାଣି କ'ଣ ?

—ଏଇ ବା ବଡ଼ିପାଣି । ତୁ ଦେଖିନୁ । ପାଣି ଜୋର୍‌ରେ ଆସିଲେ ବଡ଼ିପାଣି ହେଇଯିବ । ଆମ ପାଇପ୍ ଖୋଲିଦେଲେ ନା ସବୁଆଡ଼େ ବଡ଼ିପାଣି ହେଇଯିବ । ବଡ଼ିପାଣି ହେଇଥିଲା । ବୋଉ ଗଡ଼ିଆକୁ ଯାଇଥିଲା ବାସନ ଧୋଇବାକୁ ।

—ଗଡ଼ିଆ କ'ଣ କରେ ଲିଟୁ ?

—ତୁଟା କିଛି ଜାଣିନୁ । ଯୋଉଠି ବେଶୀ ପାଣି ଥାଏ । ଧେତ୍ ।

—ଘରେ ସିନା ବାସନ ଧୁଅନ୍ତି । ବାହାରକୁ କିଏ କ'ଣ ଯା'ନ୍ତି ? ମିଛୁଆଟେ । ମୁଁ ରାଗିଯାଇ କହିଲି—ଏଇଟା ଗଧୀଟା, କିଛି ଜାଣିନି । ମୁଁ ତାକୁ ଦେଖିଚି—ମୋ ବୋଉ ବାସନ ନେଇ ଗଡ଼ିଆକୁ ଯାଏ ।

ତୋ ବୋଉ କ'ଣ ଗୃହକରଣୀ କି ? ସିଏ କାହିଁକି ବାସନ ଧୋଇବ ? ମୋ ବୋଉ ତ ଧୁଏନା । ନସିଆଣି ବୁଢ଼ୀ ଧୁଏ ।

ହଁ, ମୋ ବୋଉ ଗୃହକରଣୀ, ହେଲା । ସେ କଂସା ଧୋଉଥିଲାବେଳେ ଦେଖିଲା ପାଣିରେ ଗୋଟାଏ କ'ଣଟାଏ ଖେଳୁଛି । ଖେଳଖେଳିକା ଯେମିତି

ସିଏ ତା ଗୋଡ଼ ପାଖକୁ ଆସିବନା, ବୋଉ ତ ଜଗିକି ରହିଥିଲି, ଖପ୍‌କିନା ତାକୁ ମାଡ଼ିବସିଲି । ଯେମିତି ଉଠେଇଆଣିଛୁ, ଦେଖିଲାବେଳକୁ ବାପା ।

—ଏଡ଼େ ବଡ଼ ବାପାକୁ ତୋ ବୋଉ କେମିତି ମାଡ଼ିବସିଲି ?

ଧେତ୍, କିଛି ବୁଝିପାରୁନ । ମୋ ମା' ପରିକା ତୁ'ଣ୍ଠା ଏକ ନମ୍ବର ଗଧି । ବାପା କ'ଣ ସେତେବେଳେ ଏତେ ବଡ଼ ଥିଲେ କି ? ଚୁଇଁଟାଏ ଥିଲେ । ଆମେ ସବୁ ଏବେ ପିଲା ଅଛେ । ପୁଣି ବାପା ମା'ଙ୍କ ପରି ବଡ଼ ହେଇଯିବାନି । ପିଲାବେଳେ ମୋ ବୋଉ ବାପାଙ୍କୁ ସବୁବେଳେ ଖାଲି ଚିଡ଼ାଏ । କହେ—"ତୁ ବଢ଼ିପାଣିରେ ଭାସିଆସିଚୁ । ତୋ ଜନମ କିଏ ଦେଖିଚ୍ଛି କି ?" ଏତିକି କହିଲେ—ବାପା ରାଗି ନିଆଁ ହେଇଯା'ନ୍ତି । ଉଁ ଉଁ ହେଇ କାନ୍ଦନ୍ତି । ବୋଉ ଯାହା କହେ—ତା କଥା ମାନନ୍ତି । ସେଦିନ ବୋଉ ମୋର ଆଗରେ ବାପାଙ୍କୁ ଯେମିତି ଏତିକି କହିଚ୍ଛିନା, ବାପା ହସିଲେ । ମୁଁ ବି ବାପାଙ୍କୁ ଚିଡ଼େଇଲି—"ତମେ ଭାସିଆସିଚ ।"

ମୁଁ ଯେମିତି ବାପାଙ୍କୁ ଏତିକି କହିଚ୍ଛିନା, ମା' କହିଲା—"ତୁ କୋଉ ଭଲ କି ? ତୁ ତ ବରଷାପାଣିରେ ଭାସି ଆସୁଥିଲୁ । ଓଳମୂଳରେ କୁଲୁ କୁଲୁ ହେଇ ଖେଳୁଥିଲୁ । ମୁଁ ତତେ ଧରି ପକେଇଲି ।"

ମୁଁ ରାଗିଯାଇ କହିଲି—ତୁ ମିଛେଇ, ବୋଉ ବି ମିଛେଇ । ବାପାଙ୍କୁ ପଚାରିଲି—"ବାପା, ତମେ ସତରେ ଭାସି ଆସିଥିଲ ?"

ମୋ କଥା ଶୁଣି ବାପା ହସିଲେ । କହିଲେ—ବୋଉ କହୁଚ୍ଛି ପରା, ଦୁଷ୍ଟ ପିଲାମାନେ ଭାସି ଆସିଥା'ନ୍ତି । ତୁ ଦୁଷ୍ଟ ହଉଚୁ । ଭାସି ଆସୁଥିଲୁ । ଆମେ ତତେ ଆଣି ପାଖରେ ରଖିଚୁ ।

ବାପାଙ୍କ କଥା ଶୁଣି ମତେ ମଜା ଲାଗିଲା । ତାଳମାରି କହିଲି—"ହଁ ବୁଝିଲି—ତମେ ବି ପିଲାବେଳେ ମୋଭଳି ଚଗଲା ହଉଥିଲ । ମୁଁ ଚଗଲା ହେଲେ, ମତେ କାଇଁକି ମାରିବ ? ତମେ ବଡ଼ ଲୋକ ବୋଲି । ମୁଁ ବଡ଼ ହେଲେ ତମକୁ ମାରିବି ଯେ । ବାପା ହେଇକି ମିଛ କହୁଚ ।"

"ତୁ ଜନମ ହେଇଚୁ ବୋଲି କିଏ ଦେଖିଚ୍ଛି କି ?" ବୋଉ କହିଲା ।

"ମା' ଦେଖିଚ, ବାପା ଦେଖିଛନ୍ତି । ତୁ ବୁଢ଼ୀ କିଛି ଜାଣିନୁ । ବାପାମା'ର ବା'ଘର ବେଳେନା ମୁଁ ପରା ଆଣ୍ଠେଇ ଆଣ୍ଠେଇ ଖେଳୁଥିଲି !"

ମୋ କଥା ଶୁଣି ବାପା, ବୋଉ, ମା' ସମସ୍ତେ ହସିଲେ । ବୋଉ ମତେ ଗେଲ କରି କହିଲା—ହୁଣ୍ଡାଟା, ତୁ ପରା ଆମର ପୁଅ । ତୁ କାହିଁକି ଭସିଆସିବୁ ?

ତୁ ଜାଣିନୁ ମେଙ୍କି, ବୋଉ ସିନା ମତେ ଭୁଲେଇବା ପାଇଁ ମିଛ କହିଲା । ମୁଁନା ସତରେ ଭସି ଆସିଥିଲି । ମା' କାହିଁ ମିଛ କହିବ ବା । ସେତେବେଳେନା ବାପାମା ଚାକରି କରି ନ ଥିଲେ । ତାଙ୍କ ପାଖରେ ପଇସା ନ ଥିଲା । ଏବେ ତାଙ୍କ ପାଖରେ କେତେ ପଇସା ହେଇଯାଇଛି । ଡାକ୍ତରଖାନାରେ ବାପା ପରା ଆଗରୁ କହିଦେଇ ଆସିଥିଲେ । ମୁଁ ବା' ମା' ସାଙ୍ଗରେ ସେଦିନ ଯାଇଥିଲି । ଶୁଣିଛି । ଆଜ ଆଣିବେ । ତୁ ଜାଣିନୁ ।

ମେଙ୍କି ମୋ କଥା ଶୁଣି କହିବାକୁ ଯାଉଥିଲା । ଠିକ୍ ଏତିକବେଳେ ମଉସା ତାଙ୍କ ସ୍କୁଟରରେ ଆସି ପହଞ୍ଚିଗଲେ । ମୁଁ ସ୍କୁଟର ପାଖକୁ ଦୋଉଡ଼ିଗଲି । ପଛ ସିଟ୍‌ରେ ବସିପଡ଼ିଲି । ମତେ ଗେଲକରି କହିଲେ—ତୋର ଭାଇ ଆସିବରେ ବାପା । କଲୋନୀରେ ସମସ୍ତଙ୍କ ଘରେ ସେ ଏ କଥା କହି ଆସିଲେ । ସ୍କୁଟର ଷ୍ଟାର୍ଟ କଲେ । ମୁଁ ମେଙ୍କିକି ଜିଭ ଦେଖେଇ ଖତେଇ ହେଲି । ରାଗରେ ସେ ବି ମତେ ଖତେଇ ହେଲା । ମୋ ଉପରକୁ ମୁଠାଏ ଧୂଳି ଫୋପାଡ଼ିଲା । ତାକୁ ଟା ଟା କରି ସ୍କୁଟର ପଛରେ ଉଠିଗଲି ।

ବଜାରରେ ମଉସା ମତେ ମିଠା ଖାଇବାକୁ ଦେଲେ । ଯୁ୍ୟା' ତା ସାଙ୍ଗରେ ଗପିଲେ । ତାଙ୍କ ଉପରେ ଭାରି ବିରକ୍ତ ହେଲି । ସେ ଯେମିତି ସ୍କୁଟର ପାଖକୁ ଆସିଛନ୍ତି—

ପଚାରିଲି—ମଉସା, ଡାକ୍ତରଖାନା ଯିବା ନା ?

ବାପାରେ, ମା' ତ କୁନିଭାଇକି ଆଣି ଘରକୁ ଆସିବଣି । ଯିବା କାହିଁକି ? ସେ କହିଲେ ।

ତମେ ଘରକୁ ଚାଲୁନ କାହିଁକି ? ଡେରିକରୁଛ ଖାଲି ।

ମତେ କେତେ ସମୟ ସେ ବଜାରରେ ବୁଲେଇଲେ । ପପିନସ୍ କିଣି ଦେଲେ । ମା' ପାଇଁ ଔଷଦ କିଣିଲେ । ଆମେ ଘରକୁ ଫେରିଲାବେଳକୁ ସମସ୍ତେ ଆସି ସାରିଥିଲେ । ଘରସାରା ଲୋକ ।

ମୁଁ ଯେମିତି ମା' ପାଖରେ ଯାଇ ପହଞ୍ଚିଛିନା, ସମସ୍ତେ ଖାଲି କହିଲେ—ଲିଟ୍ଟୁ, ଭାଇ ଆସିଗଲା । ମିଠା ଖାଇବାକୁ ଦେ ।

କାହାରି କଥା ନ ଶୁଣି ମୁଁ ଯାଇ ମା' ପାଖରେ ଠିଆ ହେଲି । ଦାଇଟାଯାକ ଖଟ ଅଲଗା ଅଲଗା । ଗୋଟାକରେ ମା' ଆଉ କୁନିପୁଅ । ମା'ଟା କେମିତି ଶୁଖିଲି ଶୁଖିଲି ଦିଶୁଥିଲା । ମୁଁ ଯେମିତି ତାକୁ ଧରିବାକୁ ଯାଇଛି—ଅନୁମାଉସୀ ମତେ କୁଣ୍ଢେଇ ଧରି କହିଲା—ମା'କୁ ଏଇନେ ଛୁଅଁ ନା ବାପା, ସେ ପରା ବାଲୁଆଦୁଅ ମାଡ଼ିଛି । ଗାଧେଇସାରି ଛୁଇଁବୁ । ସେଇଠି ପାଖରେ ଠିଆ ହୋଇ ଚୁନିଭାଇକୁ ଦେଖୁଥା ।

ମୁଁ ଯାଇ ଖଟ ପାଖରେ ଠିଆହେଲି । ଚୁନିଭାଇକୁ କୁଣ୍ଢେଇପକେଇ ଗେଲ କରିବାକୁ ଇଚ୍ଛା ହଉଥାଏ । କୁନି କୁନି ଗୋଡ଼ ହାତ, ଟିକି ଟିକି ଆଖି । ଭଡ଼ିମୋଡ଼ି ହଉଥାଏ । ବହୁତ କାମ କରି ଦେହ ଯେମିତି ଦରଜ ହେଇଯାଇଛି ।

ମାଗୁ ଫାଦର ପଚାରିଲେ—କ'ଣ ହରେ, ହେଲାତ ?

ମୁଁ ଖତେଇ ହେଇ କହିଲି—ହଁ ହେଇଛି ।

କେତେ ସମୟ ପରେ ସିଏ ଯୁଆଡ଼େ ଚାଲିଗଲେ । ସାବିତ୍ରୀ ଓଷା । ମା' ଭାତ ଡାଲମା କରିଦେଇ ଯାଇଥିଲା । ଘର ଭିତରେ ବାପା ମୁଁ ଖାଇ ବସିଲୁ । ମା' ଖଟ ଉପରେ ସେମିତି ବସିଥାଏ ।

ମୁଁ ତାକୁ ପଚାରିଲି—ମା'ଲୋ, ତୁ କ'ଣ ଖାଇବୁନି କି ? ହଁ, ତତେ ସମସ୍ତେ ଆଜି ପୂଜା କରିବେ ପରା । ଉପାସ । ଆମ୍ବ, କଦଳୀ, ଖଜୁରିକୋଳି ଖାଇବୁନା । ଖଟ ଉପରଟାରେ କାହିଁକି ବସିଚୁ ? ଆମକୁ ଖାଇବାକୁ ଦଉନୁ ?

ମୁଁ ପରା ବାଲୁଆଦୁଅ ମାଡ଼ିଛି ବାପା—ସେ କହିଲା ।

ଧୁଆଁ ମାଡ଼ିଚୁ, ଗାଧେଇପଡ଼ୁନୁ । ତତେ କ'ଣ ଦେଖାଯାଏନି କିଲୋ ମା' । ସବୁ ମାସରେ ଖାଲି ଚାରି ପାଞ୍ଚଦିନଯାକେ ବାଲୁଆଦୁଅ ମାଡ଼ିବୁ । ମୁଣ୍ଡ ଧୋଇ ଗାଧେଇବୁ । ସନ୍ଧ୍ୟା ଦବୁନି । ତୁଟା ସୁଉଦୁ ନାସେମି । ଯା' ଗାଧେଇପଡ଼ ।

"ଏଥର ପରା ବାପା ମୋ ନୁଗାପଟା ହେଇଯାଇଛି । ପରେ ଗାଧେଇବି ।"

ଛି, ତୁଟା ଏଡ଼େ ଅପରିଷ୍କାର । ଆଉ ତୋ ହାତରେ ଖାଇବିନି । ତୁ କି ବାପା, ଯେତେ ନେହୁରା କଲେ ଧୂପ କି ସଞ୍ଜ ଦେବନି । ଜାଣିଥା କଉଛି ।

ମା'ଲୋ, ତୁ ପରା ଡାକ୍ତରଖାନା ଯାଇଥିଲୁ । ଡାକ୍ତରଖାନାରେ ଏତେ ବଲୁଆ କୋଉଠୁ ଆସିଲେ । ବଲୁଆଗୁଡ଼ା ପିନା ଗାଁରେ ଥା'ନ୍ତି । ଆଜିକାଲି କ'ଣ ସହରରେ ରହିଲେଣି ? ବରଗଡ଼ରେ ଭୂକୁ ନାହାନ୍ତି ତ । ତୁ ଟା ମିଛ କଉଚୁ ।

ମା'ଲୋ, ମେଙ୍କ କହୁଥିଲୁନା, ଡାକ୍ତରଖାନାରେ କାଲେ ତୋ ପେଟ କାଟିଦେବେ । ଛୁଆ ବାହାରିପଡ଼ିବ । ମୁଁ ଡାକୁ ମାଇଲି । ପେଟ କାଟିଦେଲେ ରକ୍ତ ବାହାରେ । ମଣିଷ ମରିଯାଏ । ସତ ନା'ଲୋ ମା' । ସେଇଟାନା ସୁଉଦୁ ମିଛେଈ । ଟୁଇଁ ଭାଇପାଇଁ କେତେ ଟଙ୍କା ଦେଲୁ ? ଏକାବେଳକେ ଭଉଣୀଟିଏ ଆଣିଲୁନ ? ଆମେ ତିନିଜଣ ହେଇଯାଇଥା'ନ୍ତୁ । ନାୟକମଉସାଙ୍କର ତିନିଜଣ, ନୁହଁକ ? ତୁ ଟା ନା ସୁଉଦୁ ହୁଣ୍ଡୀ । ବୁଦ୍ଧି ନାଇଁ ।

ଆମ ପାଖରେ ପରା ଏତେ ଟଙ୍କା ନ ଥିଲା । ପରେ ଆଣିବା ।

ମା'ଲୋ, ବାପା ତୁ ତ ଟଙ୍କା ଦେଲ । ସମସ୍ତେ କାଇଁକି ଯାଇଥିଲ ? କ'ଣ ବାଛୁକରି ଆଣୁଥିଲ ନା କ'ଣ ? ଦୋକାନରୁ ଆମେ ଯେମିତି କଣୁ, ସେମିତି । ଡାକ୍ତରଖାନାରେ କେତେ ପିଲା ଥା'ନ୍ତି ? ପୁଳାଏଖଣ୍ଡେ, ନାଇଁ ? ସେଗୁଡ଼ାକ ସବୁବେଳେ ଖାଲି କାନ୍ଦୁଥିବେ, ହଗୁଥିବେ, ମୁତୁଥିବେ । ଭାରି ନାସନା କରୁଥିବେ । ସବୁଆଡ଼ ମୁତୁରା, ହଗୁରା ଗନ୍ଧେଉଥିବ । ଆଉ କେଇଦିନ ଯାଉ ଟଙ୍କା ହେଇଗଲେ ବଡ଼ିଆ ଭଉଣୀଟିଏ ନେଇ ଆସିବା । ତତେ ଆଉ କିଛି କହିବିନ ।

ମୁଁ କେବଳ କହୁଥାଏ । ବାପା ମଝିରେ ମଝିରେ ଖାଇଦେ ଖାଇଦେ ହଉଥା'ନ୍ତି । ମୋ କଥା ଶୁଣି ହସୁଥା'ନ୍ତି ।

ମା' କହିଲା—କେତେ ବକରବକର ହଉଚୁ ? ତୋ ପାଟି ବାପା ଧୋଳେଇ ହେଇପଡ଼ୁନ ? ଟାଉ ଟାଉ କରି ଖାଇଦଉନୁ ।

ମୁଁ ଖାଇସାରି ଯାଇ ହାତ ଧୋଇଲି । ବାପା ବାସନ ଗୋଟେଇଦେଇ ଧୂଆଧୋଇ କଲେ । ମା' ପାଖରେ ଆସି ଠିଆ ହେଇ କହିଲି—ଏ ମା' ତତେ କ'ଣ ଭୋକ ଲାଗୁନ କି ? ଖାଉନୁ କାଇଁକି ? ଉପାସ କରିଚୁ । ଗ' ମାଡ଼ିଲୁ, ଆଉ ଓପାସ କ'ଣ ? ଛି, ଗନ୍ଧେଇଟା ।

ଏତିକି କହି ଟକ୍‌କିନା ଖଟ ଉପରକୁ ଚଢ଼ିଗଲି । ମା' ମତେ ଖାଲି ଚୁହିଁଲା । କିଛି କହିଲାନ । ଟୁଇଁଭାଇକୁ ଧରିବାପାଇଁ ଭାରି ଇଚ୍ଛା ହେଲା । ତା' ପାଖରେ ଯାଇ ଚକା ପକେଇ ବସିଲି । ତା ଗୋଡ଼ହାତ, ପେଟକୁ, ମୁଣ୍ଡକୁ

ଆଉଁସିଦେଲି । ତାକୁ ଗେଲ କଲି । ସେ ବି ଗୋଡ଼ହାତ ହଲେଇଲା । ମତେ ମିଞ୍ଜି ମିଞ୍ଜି କରି ଚାହିଁଲା । କେଁ କେଁ ହେଲା । ମା’ ଆମକୁ ସେମିତି ଚାହିଁଥାଏ । ଖଟ ଉପରେ ଠିଆହେଇ ତା ପିଠିରେ ନଦି ହେଲି । ତାକୁ ଗେଲ କଲି । ଠେକ୍‌କିନା ତା ଦଦକୁ ଖାଇଦେଲି । ସେ କିଛି କହିଲାନି । କେବଳ ହସିଦେଲା ।

ଆଉ କୋଉଦିନ ହୋଇଥିଲେ ମତେ ପେଲିଦେଇଥାନ୍ତା । କହିଥାନ୍ତା—ବୁଢ଼ାଟିଏ ଆସି ହେଲାଣି । ଅଭ୍ୟାସ ଗଲାନି । ଲାଜ ଲାଗୁନି ?

ଏତିକିବେଳେ କାଲିମାଉସୀ କଂସାଏ ଦୁଧ ଆଣି ଖଟ ପାଖରେ ଠିଆହେଇ କହିଲେ—କ’ଣ ଲଟୁ ଛୁଇଁସାରିଲାଣିଟି । ଜାଣେପରି, ମୁଁ ସେ କିଛି ମାନିବନି । ହଉ ବାପା, ମା’ ପାଖରେ ସେଇଠି ସେମିତି ସବୁବେଳେ ବସିଥା । ଖେଳ ଫେଳ ସବୁ ବନ୍ଦ । ଆଉ କାହାକୁ ଛୁଇଁପାରିବୁନିଟି ?

ମା’ କହିଲା—ନାଆ, ଆଉ ଟିକେ ଯାଉ, ତାକୁ ଗାଧେଇଦେବ; ମୁଁ ତ ହଁ। ହଁ। କରୁ କରୁ ଖପ୍‌କିନା ଡେଇଁପଡ଼ିଲା । କ’ଣ କରିବ ?

ମୁଁ ଚୁଇଁଭାଇ ପାଖରେ ସୁନାପିଲାଟି ପରି ବସିଲି ।

ମାଉସୀ ଚାଲିଗଲା ପରେ ମା’କୁ କହିଲି—ମା’ଲୋ, ମଣିଷକୁ ମଣିଷ ଛୁଇଁବା କ’ଣ ଖରାପ କାମ କି ? ମୋର ମୁଁ ମା’ ଆଉ ଚୁଇଁଭାଇକି ଛୁଇଁଲି । କ’ଣ ହେଲା ସେଥିରେ ? ବାଲୁଆଘୁଅ ମାଡ଼ିଛି କି, ଗାଧେଇବି ?

ମା’ ମୋ କଥା ଶୁଣି ହସିଲା । ମୁଣ୍ଡ ଆଉଁସିଦେଇ କହିଲା—“ପାଗଳାଟା ।”

## ॥ ଛଅ ॥

କୁନଭାଇକୁ ଏକୁଟିଆ ଛାଡ଼ିଦେଇ ଆଉ କୁଆଡ଼େ ବୁଲି ଯିବାପାଇଁ ମୋର ଜମାରୁ ମନ ହେଲାନି । ମେକ୍‌ି, ଇଙ୍କି, ମାମିନା, ପପୁ ସମସ୍ତେ ଆମ ଘରକୁ ଆସୁଥିଲେ । ମୋତେ ଖେଳିବାକୁ ଯିବାପାଇଁ ଡାକୁଥିଲେ । ମୁଁ ନ ଗଲେ ଯେମିତି ମଜା ହବନି । ସେମାନେ ଯେତେ କହିଲେ ବି ମୁଁ ବାହାରକୁ ଗଲିନି । ଆମେସବୁ ଘର ଭିତରେ ଖେଳିଲୁ । ମା’ ବୋଷେଇ କଲାନି । ପୁଅ ପାଖରେ ସେ ଏମିତି ବସି ରହିଲା । ବାପା ଆମପେଇଁ

ଗୋଷେଇ କଲେ । କାଲମାଉସୀ ମା' ପାଇଁ ଖାଇବାକୁ ଆଣୁଥିଲେ । ମା'ଟା ଏମିତି କାହିଁକି ବସିଥିଲା କେଜାଣି ? ମୁଁ ତାକୁ ପଚାରିଲି—ଏ ମା', ତୁ କାହିଁକି ରାନ୍ଧୁନୁ ଯେ ? ବଲୁଆଧୁଅ ମାଡ଼ୁଛୁ ବୋଲି ? ଆଗରୁ ତ ମାଡ଼ୁଥିଲୁ । ଗାଧେଇପଡ଼ି ରାନ୍ଧୁଥିଲୁ । ବାପା ପୁଅପିଲା ହୋଇ ରାନ୍ଧୁଛନ୍ତି—ତତେ କ'ଣ ଭଲ ଲାଗୁଛି ? ବାପା ରାନ୍ଧିଲେ ତୁ ଖାଉନୁ କାହିଁକି ? ତାଙ୍କ ଉପରେ ରାଗିଛୁ, ନାହିଁ ? ମୁଁ ଜାଣିଛି ଯେ, ସବୁ ଜାଣିଛି । ତୁ ବାପା ପରି ଗୋଟିଏ ଖଟରେ ଶୋଉନ । ବାପା ତତେ ମାଇଲେ କି ? ଛି, ସେ ଯୋଉ ରାଗୀନା ।

ମା' ହସି ହସି କହିଲା—ନାହିଁରେ ବାପା, ଦେହଟା ଭଲଲାଗୁନି । ଔଷଦ ଖାଉଛି । ସେଇଥିପାଇଁ ମାଉସୀ ଖାଇବାକୁ ଦଉଛନ୍ତି । ତୁ ଦେଖୁନୁ ଏ କୁନିପୁଅଟା କେମିତି ସବୁବେଳେ ଖାଲି ହଗୁଚି, ମୁତୁଚି । ବାପାଙ୍କୁ ନାସନା ଲାଗିବନି । କେମିତି ଶୋଇବେ କହିଲୁ ? ସେ କାହିଁ ରାଗିବେ ?

ହଁ, ମୁଁ ଜାଣିନି କି ? ତୁ ମିଛ କହୁଛୁ । ଗୋଟାଏ ଖଟରେ ତ ଆମେ ତିନିଜଣ ଶୋଉଥିଲେ । ଟୁଇଁଟାପାଇଁ କେତେ ଜାଗା ଦରକାର ଯେ । ମେଙ୍କିଘର ଚାରିଜଣ ତ ଗୋଟାଏ ଖଟରେ ଶୋଉଛନ୍ତି । ମିଛ କହୁଛୁ । ଠାକୁର ତତେ ଫଳ ଦେବେ ଯେ ?

ମା' ପେଟରେ ଲୁଗା ବନ୍ଧା ହୋଇଥିଲା । ସେ ଗାଧୋଉ ନ ଥିଲା । ମୁଁ ପଚାରିଲି—ଏ ମା' ତୁ ଗାଧୋଉନୁ, ତୋ ଧୂଅ ହାତ ଗନ୍ଧେଉନି ? ଛି, ନାସେମା । ଡାକ୍ତରଖାନାରେ ସତରେ ତୋ ପେଟ କାଟିଦେଲେ କଲେ ମା' ? ଲୁଗା କାହିଁ ବାନ୍ଧିଛୁ । ରକ୍ତ ବୋହୁଛି । ମୋ ହାତ କଟିଗଲେ ତୁ ତ କନା ବାନ୍ଧିଦଉ । ଔଷଧ କରୁନା । ହଁମ, ମେଙ୍କି ତା'ହେଲେ ସତ କହୁଥିଲା । ତତେ କାଟୁ ନ ଥିଲେ, ତୁ କୁନ୍ଥୋଉଥାନୁ କାହିଁକି ? ଏତେବଡ଼ ପୁଅଟେ ତୋ ଟିକେନାକୁ ପେଟ ଭିତରେ କେମିତି ଥିଲା ? ବାପାଙ୍କ ପେଟରେ ରହିଲାନି । ଭଲ ହୋଇଥା'ନ୍ତା । ତାଙ୍କୁ କମ୍ କଷ୍ଟ ହୋଇଥା'ନ୍ତା । ତୁ ରନ୍ଧାବଢ଼ା, ଘର କାମ କରୁଥାନୁ । ଆମେ ସବୁ ଖାଇଥାନ୍ତୁ ।

ମା' ମୋ ମୁଣ୍ଡ ଆଉଁସିଦେଇ କହିଲା—ନାହିଁମ ବାପା, ପେଟ କାହିଁକି କଟା ହବ ?

ତା'ହେଲେ ତୁ ଟୁଇଁଙ୍କୁ କୋଉଠୁ ଆଣିଲୁ । ପିଲାମାନେ କ'ଣ ପାଣି ଭିତରେ ଖେଳୁଥାନ୍ତି ? ଲୋକମାନେ ତାଙ୍କୁ ପାଣି ଭିତରୁ ଧରି

ଡାକ୍ତରଖାନା ଆଣନ୍ତି । ପାଣିକୁ ଆସନ୍ତି କେମିତି ? ଆକାଶରୁ ଖସିପଡ଼ନ୍ତିନା ? ସେମାନେ କ'ଣ ମାଛ ହୋଇଛନ୍ତି ଯେ, ପାଣି ଭିତରେ ବୁଲୁ ବୁଲୁ ହୋଇ ଖେଳିବେ । ମରିଯିବେନି ? ଗୃନ୍ଦପଲି ବୋଉ କହୁଥିଲି, ପକ୍ଷୀ ରାଣୀମାନେ କୁନି କୁନି ପିଲାମାନଙ୍କୁ ନୁହଁ, ମାଟି ଉପରେ ଗୁଡ଼ୁଦେଇ ଯା'ନ୍ତି । ସେମାନଙ୍କୁ ତ ବଡ଼ ବଡ଼ ମଣିଷମାନେ ଦେଖିପାରନ୍ତିନି । ପିଲାଙ୍କ ପାଖକୁ ସେମାନେ ଯେମିତି ଆସନ୍ତିନା, ପକ୍ଷୀମାନେ ଆକାଶରେ ଉଡ଼ିଯା'ନ୍ତି । ସେମାନଙ୍କର ଡେଣା ଥାଏ । ଆଉ ଭାରି ସୁନ୍ଦର । ତୁ ଦେଖିଚୁ ନା ?

ମା' ବିରକ୍ତ ହୋଇ କହିଲି—ସବୁବେଳେ କାହିଁକି ଏମିତି ଚବର-ଚବର ହଉଚୁ କହିଲୁ ? ମତେ ଭଲ ଲାଗୁନି । ବଡ଼ ହେଲେ ତୁ ସବୁ ଜାଣିବୁ ।

ତା'ହେଲେ ତୁ ମିଛ କଉଚୁନା ? ଜାଣିଲି । ବୋଉ ମିଛ କଉଥିଲି । ବାପା ବି ମିଛ କହୁଛନ୍ତି । ତମେ ସମସ୍ତେ ଠକ ।

ମେଙ୍କି, ପିଙ୍କି ଯେମିତି ଆମ ଘରକୁ ଆସିଲେ—ମୁଁ ସେମାନଙ୍କୁ କୁନିଭାଇକୁ ଦେଖେଇଲି । ମେଙ୍କି କହିଲା—ଦେଖ, ତମେ ଦୁଇ ଭଉଣୀ, ଆମେ ଦୁଇ ଭାଇ । ମୋ ଟୁଇଁଭାଇ କେତେ ଗୋରା ହୋଇଚି । ତୋଠୁ ବେଶୀ ।

ସେ କହିଲା—ତୋ ଭାଇ ଗୋରା ହେଲା କ'ଣ ହେଲା ? ତୁ ତ କଳା ।

ମତେ କିଏ କଳା କହିଲେ ଭାରି ଚିଡ଼ମାଡ଼େ । ବଡ଼ବୋଉଟା ଏମିତି ଯେ, କାଳିଆସୁନା, କାଳିଆସୁନା ଡାକିବ । ସୁନା ତ ଗୋରା । କାଳିଆ ତ କଳା । ପୁଣି କାଳିଆସୁନା କ'ଣ ? ମୁଁ ତା ବାଳ ଝିଙ୍କି କହିବି—ତୁ କାଳୀ, ତୋ ବାପା କଳା, ତୋ ପୁଅ କଳା, ତୋ ଝିଅ କଳା, ତମର ସମସ୍ତେ କଳା । ନାସନା, ହେଲା । ତା ବାଳ ଧରି ଟାଣିଲେ—ସେ ମରିଗଲି ବାପା, ଗୁଡ଼ୁଦେ, ଗୁଡ଼ୁଦେ ହବ । ମୁଁ ଯେମିତି ଗୁଡ଼ୁଦେବି—ସେ କୋଳରେ ବସେଇ ଗେଲ କରିବ ।

ମା'କୁ ପଚାରିଲି—ମା'ଲୋ, ମୁଁ ତ କଳା ହେଲି, ଭାଇ କେମିତି ଗୋରା ହେଲା ?

ମା' କହିଲା—ତତେ କଳା କିଏ କହିଲା ? ତୁ ତ ସାବନା । ତୋର ପାଇଁ ସମସ୍ତଙ୍କର ଭାବନା । ସବୁ କନିଆ ତତେ ବାହାହବାକୁ କହୁ ନାହାନ୍ତି । ଟୁଇଁଭାଇର ରଙ୍ଗ ଭଲ ନୁହେଁ । ତୋ ରଙ୍ଗ ଭଲ ।

ତା ଦେହରେ କଳା ବୋଲିଦେଲେ ସେ କାଳିଆ ହୋଇଯିବନି ?

ଛି, ଦେହରେ କଳା ବୋଲିଲେ ନାସନା ହେଇଯିବନି ? ସେମିତି କରିବୁନି ।

ଝୁଇଁଭାଇର ମୁଣ୍ଡରେ ହାତ ମାରି ମୁଁ ପୁଣି କହିଲି—ଦେଖିଲୋ ମା', ଯାର ମୁଣ୍ଡରେ ଜମାରୁ ବାଳ ନାଇଁ । ଏତିକ ଟିକେ । ସେଗୁଡ଼ାକ କହିବି । ମୋ ମୁଣ୍ଡରେ କେତେ ବାଳ । ତା ଆଖିଗୁଡ଼ାକ କେମିତି ଗୋଲ ଗୋଲ । ବାବାରେ ! ଦେଏଖିନି, ତା ନଖଗୁଡ଼ାକ କେଡ଼େ କେଡ଼େ ହେଇଛି । ନାସନା । ତୁ କାଟିଦିଉନୁ । ତତେ ଖରାପ ଲାଗୁନି ? ତା ଗୁଲଟା କେଡ଼େ ବଡ଼ଲୋ ମା' । ଏଇଟା ସବୁବେଳେ ଖାଲି କ୍ୟାଉଁ କ୍ୟାଉଁ ହଉଛି କାହିଁକି ? କାନ୍ଦୁରିଟା । ତାକୁ ଖରାପ ଲାଗୁନି ? ଦେଖ୍, ଦେଖ୍, କେମିତି ଭଡ଼ମୋଡ଼ ହଉଚି । ପାଡ଼ିବ । ତୋ । ସୁଉଦୁ ପାଢ଼ୁରି ବାପାଙ୍କ ଭଳିଆ । ବୋମା ଫୁଟୋଉଛି ।

ମୋ କଥା ଶୁଣି ମା' ହସିଲା । କହିଲା, ଛି ବାପାଙ୍କୁ ସେମିତି କହନ୍ତି ? ଦେଖ୍, ତୋ ଆଖି କଳା, ଲମ୍ବା, ଡଳ ଡଳ । ବାଳ କଳା, ଗହଳା । ତୋ ନଖ କେତେ ସରୁ । ସ୍ୱର କେତେ ମିଠା । ଠିକ୍ ତୋ ବାପା ପରି ।

ମୋ ବାପା ସୁନ୍ଦର । ମୁଁ ସୁନ୍ଦର । ନାଇଁଲୋ ମା' ? ଆଉ ତୁ ? କୁନିଭାଇ କ'ଣ ସୁନ୍ଦର ନୁହଁକି ?

ହଁ, ସିଏ ବି ସୁନ୍ଦର । ତୋ ଜେଜେଙ୍କ ପରି ।

ମୁଁ ପଚାରିଲି—ଜେଜେ କିଏଲୋ ମା' ?

ତୁ ଜାଣିନୁ ? ଜେଜେ ହେଲେ ବାପାଙ୍କର ବାପା ।

ତୁ କ'ଣ ତାଙ୍କୁ ଦେଖିଚୁ କି ?

ବାପା ପରା କହୁଥିଲେ, କୁନିପୁଅ ଠିକ୍ ତାଙ୍କ ବାପାଙ୍କ ପରି ହେଇଛି । ଗୋରା । ଗୋଲ ମୁହଁ । ଡମା ଡମା ଆଖି । ଚନ୍ଦା, ବାଙ୍ଗରା ସବୁ ।

ମା'ଲୋ, ବାପା ନା, କୁନିଭାଇକୁ ବେଶୀ ଭଲ ପାଇବେ, ନୁହଁ ?

ମା' ହସି ହସି ପଚାରିଲା—କାଇଁ, ତୁ କେମିତି ଜାଣିଲୁ ?

ତୁ ତ କହୁଛୁ—ସେ ତା ବାପାଙ୍କ ପରି ହେଇଛି । ବୋଉ ବି ତାକୁ ବେଶୀ ଭଲ ପାଇବ । ସେ ତା ବୁଢ଼ାପରି ।

ବୋଉ ପରା ତତେ ବୁଢ଼ା ବୋଲି ଡାକେ । ସେ ତ ତୋ ନାଁ ଦେଇଛି ଗୌତମ । ତତେ ସେ ଖୁବ ଭଲପାଏ ।

ମା'ଲୋ, ତୁ ତ ମୋ ନାଁ ଦେଇଥିଲୁ ଚନ୍ଦ୍ରଚୂଡ଼ ଶରତ ସୁନ୍ଦର । ଖମାରରେ ଶଙ୍କାଳୀମାମୁ ଡାକନ୍ତି ଘ୍ରାମ । ବନୋଦନନା ଡାକନ୍ତି ଖମାରଆ । ବଡ଼ବୋଉ ଡାକନ୍ତି କାଳଆ । ଗୃନ୍ଦପଲ୍ଲବୋଉ ଡାକନ୍ତି ଗୌତମ । ମାଗୁ-ମଦର ଡାକନ୍ତି ବରଗଡ଼ଆ । ତୁ ଡାକନ୍ତୁ ଲଟ୍ଟୁ । ମୋର କେତେ ନାଁ କଲୋ ମା' ? ଚନ୍ଦ୍ରଚୂଡ଼ ଶରତସୁନ୍ଦର, ଖମାରଆ, ବରଗଡ଼ଆ, ଘ୍ରାମ, ଗୌତମ, ଲଟ୍ଟୁ ଦାଶ୍ । ତା ସାଙ୍ଗରେ ବାପାଙ୍କ ଡାକ ବାଇଡଙ୍କ । କେତେ ଲମ୍ବା । ଛି ।

ମା' କହିଲା—ତୋର ତ ଏତେ ନାଁ । କୁନଭାଇ ନାଁ କ'ଣ ଦବା ?

ମୁଁ କାହିଁକି ଦେବ ? ସେ ଯା ବୁଢ଼ା, ସେ ଦବନ୍ତି କ ?

ଦେଖ୍, ଏଥର ତୋ ସାନଭାଇର ନାଁ ତୁ ଦବୁ । ସେମାନେ କାହିଁକି ଦେବେ ?

ମା' କଥା ଶୁଣି ମତେ ଭାରି ଭଲଲାଗିଲା । କହିଲି—ତୁ ଜାଣିଛୁନା ମା' । ଆମ ବହିରେ ପଢ଼ା ହଉଛି କ 'ଏ ପକ୍ଷୀଟି କାହାର ? ହଂସଟିଏ ଆକାଶରେ ଉଡ଼ି ଯାଉଥିଲା । ଦେବଦତ୍ତ ଶର ମାରିଦେଲା । ସେ ତଳେ ପଡ଼ିଗଲା । ଗୌତମ ତାକୁ ରକ୍ଷା କଲେ । ପକ୍ଷୀଟି ହେଲା ଗୌତମର । ନାହିଁଲେ ମା' ? ଗୌତମର ଭାଇ ଦେବଦତ୍ତ ।

ମା' କହିଲା—ହଇରେ, ଦେବଦତ୍ତ ଆଉ ଗୌତମର କଳି ହେଇଥିଲା ପରା । ତମେ ଦୁଇ ଭାଇ କ'ଣ ସବୁବେଳେ କଳି କରିବ ?

କଳି କାହିଁକି କରିବୁ ? ସେ ତ ମୋର କୁନଭାଇ । ଆମେ ସାଙ୍ଗ ହେଇ ଖାଇବୁ, ଖେଳିବୁ, ପାଠ ପଢ଼ିବୁ, ଗୀତ ବୋଲିବୁ, ଶୋଇବୁ । ସବୁ କାମ କରିବୁ ।

ହଉ ଭଲ ହେଲା । ଜଣେ କଳାକୁ ଜଣେ ଗୋରା । ଜଣେ ଗଉତମ, ଆଉଜଣେ ଦେବଦତ୍ତ । ଜଣେ ଲଟ୍ଟୁ, ଆଉଜଣେ ?

'ଟୁଲୁ' । ମୋ ପାଟିରୁ ସାଙ୍ଗେ ସାଙ୍ଗେ ବାହାରିପଡ଼ିଲା । ଯେମିତି ମୁଁ ଟୁଲୁ କହିଛି, କୁନପୁଅ କ୍ୟାଉଁକିନା କାନ୍ଦିଉଠିଲା । ଭଡ଼ିମୋଡ଼ି ହେଇ କହିଲା—ହୁଁ । ତା'ପରେ ଆଖି ବୁଜିଦେଲା ।

ମା' କହିଲା—ଦେଖିଲୁ ତ ତୁ ଯେମିତି ଟୁଲୁ ବୋଲି ଡାକି ଦେଇଛୁନା, ସେ ସାଙ୍ଗେ ସାଙ୍ଗେ ଓ କଲା । ନା ବୋଲି ତତେ ଡାକିଦେଲାନି ?

ମା' ତାକୁ ଆଣି କୋଳରେ ଧଇଲା । ଦୁଧ ଦେଲା । ମୁଁ ତାକୁ ଗେଲ କଲି । ଏତିକବେଳେ କାଲିମାଉସୀ ପହଞ୍ଚିଗଲେ ଘର ଭିତରେ । ହାତରେ ମିଠା ଥାଳି ।

ମୋ ପାଟିରେ ମିଠାଟାଏ ଗୁଞ୍ଜିଦେଇ କହିଲେ—ଆମର ପୁଅ ହେଇଛି, ମିଠା ଖାଇଦେ । ସେଇଟା ପାଟିରୁ ସରୁ, ଆଉରି ଦେବି ।

ତମ ପୁଅ ନା ଆମ ପୁଅ ? ମୁଁ ରାଗିକରି କହିଲି ।

ତୋ ମା'କୁ ପଚାରୁନୁ । ମୁଁ କାହିଁକି କହିବି ?

ମୁଁ ମା' ଆଡ଼କୁ ଚାହିଁଲି । ସେ କିଛି କହିଲାନି । ଖାଲି ହସିଲା ।

ମାଉସୀ ପୁଣି କହିଲେ—ତୁ ଜାଣିନୁ କି, ମୁଁ ପରା ଡାକ୍ତରଖାନାରୁ ଏ ପୁଅଟାକୁ କିଣି ଆଣିଛି । ଏବେ ତୋ ମା' ପାଖରେ ରଖିଛି । ଆଉ କେଇଦିନ ପରେ ନେଇଯିବିନି କି ?

ହିଁ, ତମେ ମିଛ କହୁଛ । ତମର ଏତେ ପୁଅ ଝିଅ ଅଛନ୍ତି । ପୁଣି ନେଇ କ'ଣ କରିବ ?

ଆମର ଅଛନ୍ତି । ପୁଣି ନେବି । ପୁଅ ବଡ଼ ହେଇଗଲା ପରେ ଆଉରି ଆଣିବି । ତୋ ବାପା ବୋଉ ପାଖରେ ସିନା ପଇସା ନାହିଁ । ଆମର ତ ବହୁତ ପଇସା । କହ, ତମର ଯଦି ପୁଅ ଆସିଥାନ୍ତା, ତମେ ମିଠା ଦେଇଥାନ୍ତ । ତୋ ମା', ବାପା କି ତୁ କିଏ ଦେଇଚ କି ? ଆମର ହେଇଛି ବୋଲି ଆମେ ଦେଲୁନା ଆଉ ।

ମାଉସୀ ଯେମିତି ଏତିକି କହିଛି—ମୁଁ ତଳମୁଣ୍ଡେ ମିଠାଗୁଡ଼ାକ ଥୁ ଥୁ କରି ଫୋପାଡ଼ିଦେଲି । ଆଖିରୁ ଲୁହ ଝରିଲା ।

ମାଉସୀ ମିଠାଥାଳିଟା ଟେବୁଲ୍ ଉପରେ ଥୋଇଦେଇ ମୋ ପାଖକୁ ଦୋଉଡ଼ିଆସିଲେ । ମତେ କାଖେଇଲେ । ଗେଲ କଲେ । ମୁଁ ସେମିତି କାନ୍ଦୁଥାଏ । କହିଲେ—ନାଇଁରେ ବାପା, ସେ ପରା ତୋ ସାନଭାଇ । ଆମ ପୁଅ ନୁହେଁ । ହେଲା । କାନ୍ଦନା । ଛି । ସମସ୍ତେ କହିବେ କାନ୍ଦୁରା । ସେ ଆଉରି ଗୋଟାଏ ମିଠା ମୋ ପାଟିରେ ଗୁଞ୍ଜିଦେଲେ । ଗେଲ କଲେ । ପିଠି ଆଉଁସିଦେଲେ । ତାକୁ ଗେଲ କରିବାକୁ ମତେ କହିଲେ । ମୁଁ ଗେଲ କଲି ।

ମା' କହିଲା—ଜାଣିଲଣିନା ନାନୀ, ଲିଟ୍ଟୁ ଆଜ ତା ସାନଭାଇର ନାଁ ଦେଇଛି । ତା ବହିରେ ପରି ଲେଖା ହୋଇଛି—ଗୌତମର ସାନଭାଇ ଦେବଦତ୍ତ । ତା ଡାକ ନାଁ କ'ଣ ଜାଣିଚ ତ—ଲିଟ୍ଟୁ ଓଲଟେଇ ଦେଲେ କ'ଣ ହବ ? ଟୁଲ୍ଲି । ତମେ ଜାଣିପାରୁନ । ପୁଅ ଜାଣିଦେଇଛି । କମ୍ ବୁଦ୍ଧିଆ କି ?

ମାଉସୀ ମା' କଥା ଶୁଣି ହସିଲେ । ମତେ ନାଜ ଲାଗିଲା । ମତେ କାଖରୁ ଓହ୍ଲେଇଦେଲେ । କହିଲେ—ଧର ଏ ଥାଳିକଯାକ ମିଠା । ତୋ ପେଇଁ, ବାପାଙ୍କପେଇଁ ଆଗ ସେ ଘରେ ରଖିଦେଇ ଆ । ସମସ୍ତଙ୍କ ଘରେ ବାଣ୍ଟି ଦେଇଆସିବୁ । ଆମଘରେ ବି ଦବୁ । କହିବୁ—ଆମର ଟୁଇଁଭାଇ ହୋଇଛି । ମିଠା ନିଅ । ଚାଲ ।

ମିଠାଥାଳି ଦୁଇ ହାତରେ ଧରି ମୁଁ ମାଉସୀଙ୍କ ଆଗେ ଆଗେ ଚାଲିଲି ।

## ॥ ସାତ ॥

ଗାଁକୁ ଗଲେନା, ମତେ ଏକଦମ୍ ମଜାଲାଗେ । ସବୁଆଡ଼େ ଆମ୍ବ, ବାଉଁଶ, ନଡ଼ିଆ, ଚାକୁଣ୍ଡା, ପଣସମାଳ । ସବୁଜ ବଣ । ଧାନ କିଆରି । ହାଟ । ଗରଦପୁରର ଗୋଖିଆଈ, ନଇଁହପୁରର ମିଠାଅଜା, ଦଶମାଣକୁଳର ଗପୁଡ଼ିଅଜା ସମସ୍ତଙ୍କ ଘରେ ବୁଲିଆସେ । ସେମାନେ ମତେ କେତେ ଗେହ୍ଲା କରନ୍ତି । ଆଉ ଗାଁରେ ଗୁଲିଆନନା, ଫାଖି ନାନୀ, ଖୁମା, ପେଚ୍ଚୀ, ବାବୁନା, ମାନିଆ ସାଙ୍ଗରେ ଖେଳ । ଘରକୁ ତ ସବୁବେଳେ ଲୋକ ଆସୁଥାନ୍ତି । ମା' ଖାଲି ଚା' କରୁଥାଏ । ବୋଉ ପାନ ଭାଙ୍ଗୁ ଭାଙ୍ଗୁ ଗପ ମାରୁଥାଏ । ସମସ୍ତେ ଖାଲି ପଚାରୁଥାନ୍ତି—ନୃସିଂହ ପୁଅ କାହିଁ ? ଟୋକାକୁ ଟିକେ ଦେଖନ୍ତୁ—କେମିତିଆ ଚଗଲା ହୋଇଛି । ନମସ୍କାର ହୋଇ ହୋଇ ମତେ ବିରକ୍ତ ମାଡ଼େ ।

ଆଉ ଏ ମା'ଟା ଏମିତି ଯେ କୁଆଡ଼େ କ'ଣ ଛାଡ଼ିବ କି ? ଯୁଆଡ଼େ ଗଲେ ଖାଲି ଚିଲେଉଥିବ ଏଡ଼େବଡ଼ ପାଟିରେ—ଲିଟ୍ଟୁରେ, ଲିଟ୍ଟୁରେ, ଏ ଲିଟ୍ଟୁ । କହିବ—ମୋର ଆଖି ଆଗରେ ଖେଳୁଥିବୁ । ତାକୁ ଯେମିତି କିଏ

ଧରି ନେଇଯାଉଛି । ସେ ଯେମିତି ଆଉ କୁଆଡ଼େ ପଳେଇଯାଉଛି । ତା ଡାକ ଶୁଣି 'ଓ' ନ କଲେ ସବୁଆଡ଼ ଦଉଡ଼ି ପକେଇବ ।

ମା'ର ନା ଏଡ଼କ ବଡ଼ ପାଟି । ହାଣ୍ଡିଆ । ଏଡ଼େ ବଡ଼ ପାଟି କରୁଛି । ଗାଁ ଲୋକମାନେ ଖରାପ ଭାବିବେନି ? ବାପା କହିବେ—ଟିକିଏ ଭଲଉମ କମା । ସେ କ'ଣ ମାନିବ କି ? ଓଲଟି ତାଙ୍କୁ କହିବ—ମୁଁ ପାରିବିନି । ତା'ପରେ ଚାଲିଇବ—ଲଣ୍ଠନରେ । ତା ପାଟି ଯେମିତି ଶୁଣିବିନା, ବାଁକାଲିଆ ମାରି ଘରକୁ ପଳେଇଆସିବି । ବୋଉ ନଇଲେ ଉଷାମା ପାଖରେ ବସି ସୁନା ପିଲାଟି ପରି ଖେଳିବି । ମତେ କୋଉଠି ନ ପାଇ, ସେ ରାଗ ତମ ତମ ହେଇ ଘରକୁ ଆସିବ । କାନ୍ଦି ପକେଇବ । ମତେ ଯେମିତି ଦେଖିବ, କହିବ—ଏଇଠି ଆସି ବସିପଡ଼ିଚୁ ତ । 'ଓ' କହିପାରୁନୁ । ପାଟିରେ ବେଙ୍ଗ ବନ୍ଧା ହେଇଛି । ମୁଁ ସବୁଆଡ଼େ ଖୋଜି ଆସିଲିଣି । ଏଠୁ ତତେ ନେଇ ନ ଗଲେ ମୋର ରକ୍ଷା ନାହିଁ । କାହାରି କଥା ମାନୁନି । ସବୁ ପାଠ ଚୁଲିରେ ପଶିଲାଣି । ବୁଲି ବୁଲି କଳାକାଠ ପଡ଼ିଗଲାଣି । ଯାହା ସ୍ୟାଡ଼ ଯାହା ପାଉଚି ଖାଉଚି । ସେଠିକି ଯାଇ ଖାଲି ହଗି ହବ, ଜର ହବ, ପେଟ କାମୁଡ଼ିବ । ମୋ ପ୍ରାଣ ଖାଇବ । ଆଉ ପାରିବିନି । କାଲି ପଳେଇବି । କେତେ ଷଣ୍ଢ ହବୁ ଦେଖିବି । ରହ ।

ତା କଥା ଶୁଣି ବୋଉ କହିବ—ଆଲୋ, ତୁ ସେମିତି କାଇଁକି ହଉଚୁ କହିଲୁ ? ସେ ମୋ'ର ପାଖରେ ବସିଛି ପରା । ପିଲାଟା ବରଷକୁ ଥରେ ଅଧେ ଗାଁକୁ ଆସୁଛି । ଖେଳିବନି ତ ଆଉ କ'ଣ କରିବ ? ସବୁବେଳେ ଖାଲି ପଢୁଥିବ ? ତାକୁ ଘରେ ମୁରେଇ ଚାବି ଦେଇଦଉନୁ । କିଏ ମନା କରୁଛି ?

ମା' ରାଗରେ ମୋ ପାଖକୁ ଆସି କହିବ—ହଇରେ ଛତରା, କୋଉଠିଯାଇ ଡେଉଁଥିଲୁ ? ମୋ ଡାକ ଶୁଣି ଚୁପ୍‌କିନା ପଳେଇଆସିଲୁ, ବୋଉ କୋଳକୁ । କିଛି ଜାଣିନି । ତୁ ରହିଥା ବେଟା ।

"ମତେ ଚାହିଁନୁ—ମୁଁ ଗୋକୁଳ ଦୁବେଇ ଝିଅଟି" । ବୋଉ କହିବ ।

ମା' ଆଉ କିଛି କହିବନି । ମୁଁ ବୋଉ କୋଳ ଭିତରକୁ ପଶିଯିବି । ସେ ତ ବ୍ଲାଉଜ୍ ପିନ୍ଧି ନ ଥିବ । ଥିଇକିନା ତା ଦଦ ଖାଇବି । ବୋଉ ଲୁଗା ଘୋଡ଼େଇଦେଇ କହିବ—ଛି ।

ମା' କହିବ—ବୁଢ଼ା ହେଲାଣି, ଲାଜ ନାଇଁ ।

ତୁ ବୁଢ଼ୀ ହେଇ କେମିତି ବୋଉ ଦଦ ଖାଉଚୁ ? ତତେ ଲାଜ ଲାଗୁନି । ମତେ କାଇଁକି ଲାଗିବ ? ରହ ବାପାଙ୍କୁ କହିଦେବି ।

ବୋଉ ନ ଥିଲେ ଉଷାମା ପାଖରେ ବସିଯିବି । ତାକୁ ତ ମା' ଖୁବ୍ ଭଲପାଏ । କିଛି କହିବନି । ଉଷାନାନୀ ନ ଥିଲେ ଠାକୁରଘର । ମା'ଟା ଏମିତି ଆକୁଳି, ହୁଣ୍ଡୀ ଯେ ମତେ ଗୋଡ଼େଇ ଗୋଡ଼େଇ ଜମାରୁ ପାରିବନି । ବାଁକାଲିଆ ମାରିଦେବି । ସେ ଖାଲି ପାଟି କରୁଥିବ ।

ସେ ଯେମିତି ମତେ ପଢ଼ିବାକୁ କହିବ—ମୁଁ ସୁନାପିଲାଟି ପରି ବସିଯିବି । ଟିକିଏ ପରେ କହିବି—ମା'ଲୋ ମୂତ ମାଡ଼ିଲାଣି, ହଗ ମାଡ଼ିଲାଣି ।

ସେ କହିବ—ହଁ, ପଢ଼ିଲାବେଳେ ତ ସେଇଗୁଡ଼ାକ ମାଡ଼େ । ବସ ସେଇଠି । ସବୁ ବନ୍ଦ । କୁଆଡ଼େ ଯାଇପାରିବୁନି ।

ମୁଁ ଯେମିତି ବେଶୀ କୁନ୍ଥେଇବି, କହିବ—ହଉ ଯା । ଗାଣ୍ଡି ଧୋଇବାକୁ ଗଡ଼ିଆକୁ ଯିବୁନି । ଉଷାମା, ବୋଉ କି ମତେ ଡାକିବୁ । ମତେ କୋଉ ସତରେ ହଗ କି ମୂତ ମାଡ଼ୁଥାଏ ଯେ, କାହାକୁ ଡାକିବି ? ଗୁହାଳ ପଛପାଖ ଆମ୍ବ, ନଡ଼ିଆମାଳ ଭିତରେ ବସିପଡ଼େ । ଖେଳେ ।

ଆଜି ଖେଳଖେଳକା ନୂଆ ଗଡ଼ିଆକୂଳକୁ ଚାଲିଗଲି । କେଡ଼େ ବଡ଼ ଗଡ଼ିଆ । ଖରାଦିନରେ ବି ବହୁତ ପାଣି । ମା' ଆଜି ପହଁରୁଥିଲି । ମୁଁ କୂଳରେ ଠିଆହେଇ ତାଳି ମାରୁଥିଲି । ଗୁଲିଆ ବଡ଼ବାପା ଯେମିତି ଆସିଛନ୍ତିନା, ସେଇଠି ଠିଆ ହେଇଗଲି ତାଙ୍କୁ ପଛ କରି । ମୁଁ କହିଲି—ବଡ଼ବାପା, ମା' ବଢ଼ିଆ ପହଁରୁଚି—ରୁହ ଦେଖିବା । ବଡ଼ବାପା କିଛି ନ କହି ଯେମିତି ଚାଲିଗଲେ, ମା' ସାଙ୍ଗେ ସାଙ୍ଗେ ଗାଧେଇପଡ଼ି ପଳେଇଆସିଲା ।

ଗଡ଼ିଆ ଚାରିପାଖରେ ଆମ୍ବ, ପିଜୁଳି, ତାଳଗଛ । ମୋର କାଇଁକି ତାଳ ଖାଇବାକୁ ମନ ହେଲା । ଗୋଟିଏ ଗଛଟାରେ କୁନି କୁନି ତାଳ । ସବୁଆଡ଼କୁ ଚାହିଁଲି । କେହି କୁଆଡ଼େ ନ ଥା'ନ୍ତି । ଗଛକୁ ଚଢ଼ିଲି । ଯେମିତି ଚଢ଼ିଚି କଣ୍ଟାଗୁଡ଼ାକ ଜାମାରେ ଲାଗିଲା । ଜଙ୍ଘ, ହାତ ଆମ୍ପୁଡ଼ା ହେଇଗଲା । କଷ୍ଟେମଷ୍ଟେ ଟିକିଏ ଉପରକୁ ଚଢ଼ିଗଲି । ଯେମିତି ତଳକୁ ଚାହିଁଦେଇଚି— ଖୁବ୍ ଡର ମାଡ଼ିଲା । ଆଉ ଉପରକୁ ଯାଇପାରିଲିନି । ଗୋଟାଏ ଶୁଖିଲା ବାହୁଙ୍ଗା ଉପରେ ବସି ଗଛକୁ କୁଣ୍ଢେଇଧରି କାନ୍ଦିଲି । ସେଇବାଟେ କାଳିଆ- ହେଇ କିଏ ଜଣେ ଆସୁଥିଲେ । ତାଙ୍କ ହାତରେ ପାଞ୍ଚଣ । ମୁଣ୍ଡରେ ନାଲିଆ

ଗାମୁଛାର ଠେକା । ମତେ ଯେମିତି ଦେଖିଛନ୍ତିନା, କହିଲେ—ଆରେ ଟଗଲାଟା, ତୁ ଏତେବାଟ ଚଢ଼ିଲୁ କେମିତି ? ତତେ କଏ ଉଠେଇ ଦେଇଛିନା କ'ଣ ? ତୁ ତ ଚଢ଼ିପାରିବା କଥା ନୁହେଁ ? ତାଙ୍କୁ ଦେଖି ମୋର ସାହସ ହେଲା । ଉଁଉଁ ହେଇ କାନ୍ଦିଲି । ସେ ଗଛମୂଳେ ଠିଆହେଇ, ମତେ ଆସ୍ତେକିନା ଓହ୍ଲେଇଦେଲେ । କାଖେଇକରି ପଚାରିଲେ—ବାପାରେ ତୁ କାହାପୁଅ ? ମୁଁ ତତେ ନୂଆ ଦେଖୁଛି । ତୁ ତ ନୃସିଂହପିଠିକା ଦୁଶୁଚୁ । ଚାଲିଲୁ ।

ତାଙ୍କ ଗାମୁଛାରେ ମତେ ପୋଛିପାଛି ଦେଇ ଆମ ଘରଆଡ଼କୁ ଆସିଲେ । ଆମ ଦୁଆରମୁହଁରେ ଠିଆ ହେଇ ଡାକଲେ—ନୃସିଂହ ଅଛୁକି ? ମାଉସୀ ତାଙ୍କ ଡାକ ଶୁଣି ବୋଉ, ମା', ଉଷାମା ସମସ୍ତେ ପଦାକୁ ବାହାରି-ଆସିଲେ । ମା' ତାଙ୍କୁ ନମସ୍କାର କଲା । ସେ କହିଲେ—"ମା, ୟାକୁ ନେ । ଏକୁଟିଆ କୁଆଡ଼େ ଛାଆଡ଼େନା । ନୂଆ ଗଡ଼ଆକୂଳ ସେ ଟ୍ରେଟ ତାଳଗଛ ଅଧରେ ଯାଇ ବସିଥିଲା । ଭାବିଲି—ଏ ତ ନୂଆ ପିଲାପରି ଲାଗୁଛି । ଗାଁ ପିଲା ଚଢ଼ିବେନି । ସେମାନେ ଜାଣିଛନ୍ତି । ତାଳ କଣ୍ଟାଲାଗି ପେଟ, ଗୋଡ଼, ହାତ ଚିରି ହେଇଯାଇଛି । ତାକୁ ମାରଧର କରନା । ପୋଛିପାଛି ଦିଅ । ସହରି ପିଲା ଗାଁକୁ ଆସିଲେ ତାଙ୍କୁ ମଜା ଲାଗେ । ଯେମିତି ହ'ନ୍ତି । ଛୁଆଲୋକ—ସେ କ'ଣ ଜାଣିଛି ? ଚଢ଼ୁ ଚଢ଼ୁ ଚଢ଼ିଯାଇଛି । ଆଉ ଓହ୍ଲେଇପାରିନି ।

ମା' କାନ୍ଦ କାନ୍ଦ ହେଇ କହିଲା—ଭାଇନା, ମୁଁ ଆଉ ଟୋକାକୁ ପାରିବିନି । ପଅରଦିନଠାରୁ ଡେଉଁଚି ଯେ, ଡାକ ଡାକ ମରିଗଲେ ବି ଶୁଣୁନି । ଦେଖୁନା, ସେଠି ବହିପତ୍ର ପଡ଼ିଛି । ଝାଡ଼ାଯିବା ବାହାନାରେ ଯାଇ ତାଳଗଛ ଉପରେ । ଚାଲ୍ ।

ମା' ମତେ ଘର ଭିତରକୁ ନେଲା । ସେ ଲୋକ ନ ଥିଲେ ଭଲ କରି ଥୋଇଥା'ନ୍ତା । ଖାଲି ରକ୍ତଗୁଡ଼ାକ ଗୋବୋଉଥାଏ । ମା' ଦେହରୁ ଜାମା ପେଣ୍ଟ ଖୋଲିଦେଲା । ନାକେଇ ଗଡ଼ଆରେ ନେଇ ଧୋଇଧାଇ ଦେଲା । ଆଞ୍ଚୁଡ଼ା ଜାଗାରେ ସ୍ପିରିଟ୍ ଆଉ ନଡ଼ିଆତେଲ ମାରିଦେଲା । କାନ୍ଦପକେଇ କହିଲା—ତତେ କାଲି ଖମାରି ନେଇଯିବି । ଏଠି କେତେବେଳେ ତୋ ଜୀବନ ଯିବ, ଠିକଣା ନାହିଁ । ବାପ ନିଦାବିଷ୍ଟୁ ଯେ କିଛି କହିବେନି । ଥରେ ରାଗିଲେ, ବାଡ଼େଇ ବାଡ଼େଇ ଦରମଲା କରି ପକେଇବେ । ପିଲାଟାକୁ ଟିକେ ଆକଟ କରନ୍ତେନି । ମେଞ୍ଚଡ଼ ଟୋକା ଖରାବେଳେ ଯାଇ ଗଛ ଉପରେ । ଭୂତା ମଣିଷଙ୍କୁଆ ନା କ'ଣବେ ?

ଯେଏଁଟ ପିନ୍ଧେଇ ଦଉଦଉ ଦୂଲୁକନା ଗୋଟାଏ ଥୋଇଲା ମୋ ପିଠିରେ । ଆଉରି ମାରିବାକୁ ଯାଉଥିଲା, ବୋଉ ଦୋଉଡ଼ିଆସିଲା ଠାକୁର-ଘରୁ । ମୋତେ ପାଖକୁ ଟାଣିନେଇ ଯେଏଁଟ, ସାର୍ଟ ପିନ୍ଧେଇଦେଲା । ମା'କୁ ଚଡ଼ାଗଳାରେ କହିଲା—ପିଲାଟାକୁ ମାରିଲେ କ'ଣ ସେ ଶାସନ ହେଇଯିବ ? ମା'ବାପା ହଳକଯାକ ସବୁବେଳେ ତା ଉପରେ ଗରଗର ହଉଚ । ହାତ ଗଲୁ ମାରୁଛ । ତାକୁ ବୁଝେଇଶୁଝେଇ ସବୁକଥା କହିବ ସିନା । ଦେଖୁଚ ତ ପିଲାଟା ଚଗଲା ହେଇଛି । ହରଦମ୍ ତାକୁ ମାରିଲେ, ଗାଳିଦେଲେ ସେ ତମକୁ ଖାତିର କରିବ ? ପାଠ ନା ଛେନାଗୁଡ଼ ପଢ଼ିଛ ? ଯା' ମା', କାଲି ତାକୁ ନେଇ ପଢେଇଯା । ଏମିତିକା ବାକୁଙ୍ଗାକୁ ଆଉ କ'ଣ କରିବୁ ? ମୁଁ ଗୃହ-ଗୃହଟା ଛୁଆଙ୍କୁ ମଣିଷ କରିଛି—ଏ ଗୋଟାଏ ତ ମୋ ନାକରେ ପାଣି ଚୂରେଇଲାଣି । ଯେମିତି ବୁଦ୍ଧି ବାହାର କରୁଛୁ, ସେମିତି ଖାଇବୁ । ଭୁଟା କ ମଣିଷ ହବୁ ? ଏତେ ବୁଝେଇ କହୁଛି—ହଉନ । ମୁଁ କ'ଣ କରିବ ?

ବୋଉ ଚଟ ପକେଇଦେଲା । ଉଷୁମା ଭାତ ତରକାରି ବାଢ଼ିଦେଲା । ବୋଉ ଖୁଆଇଦେଲା । ମୁହଁହାତ ଧୋଇଧାଇ ଦେଇ କହିଲା—ଯା, ସେ ଘରେ ଶୋଇପଡ଼ିବୁ । ଶୋଇକି ଉଠିଲେ—ଘଣ୍ଟାଏ ପଢ଼ା । ତା'ପରେ ଯାଇ ଖେଳ । ମୋ କଥା ନ ମାନିଲେ—ଖାଇବୁ । ମୁଁ କ'ଣ କରିବ ?

ମା' ତା'ର ଷ୍ଟେଷେଇଘରେ ସେମିତି ପଶିଥାଏ । ମତେ ଊଁ କି ଚୁଁ କିଛି କହୁ ନ ଥାଏ ।

ଖଟ ଉପରେ ଟିକିଏ ଘାଲେଇକି ପଡ଼ିଛି କି ନାହିଁ, ଠାକୁରଘରୁ ବୋଉ ଡାକିଲା—ହେ ଗୌତମ, ଭୋଗ ନେଇ ଯା ।

ବୋଉ ଡାକ ଶୁଣି ମୁଁ ଖପ୍‌କିନା ମାଙ୍କଡ଼ଙ୍କ ଭଳିଆ ଖଟ ଉପରୁ ଡେଇଁପଡ଼ିଲି ଏକାଥରକେ ଠାକୁରଘରେ ।

ମା' କହିଲା—ବୋଉ, ସେ ଏବେ ଭୋଗ ଖାଇ ନ ଥିଲେ କ'ଣ ଚଳି ନ ଥା'ନ୍ତା ? ତମେ ତ ତାକୁ ସେମିତି କରୁଛନା ?

ବୋଉ ଊଁ କି ଚୁଁ କିଛି କହିଲାନି । ମୁଁ ଯାଇ ତା ପାଖରେ ବସିଲି । ସେ ପଦ୍ମାସନ ପକେଇ ପ୍ରାର୍ଥନା କରୁଥାଏ । ଥାଳିଆରେ ଥୁଆ ହେଇଥାଏ କଦଳୀ, ନଡ଼ିଆ । ସବୁତକ ଭୋଗ ସଫା କରିଦେଲି । ତା କାନରେ ମୁହଁ ପୋଛିଲି । ପିଠିରେ ନାଉ ହେଇପଡ଼ ଦଦରେ ଟିକେ ହାତ ମାରିଦେଲି ।

ସେ କିଛି କହିଲାନି । ଖାଲି ଉଁଉଁ ହେଲା । ମୁଁ ତା ପିଠିରୁ ଓହ୍ଲେଇ-ଗଲି । ସେ ଆଣ୍ଠେଇ ମା'ଙ୍କୁ ନମସ୍କାର କଲା । କାନ ମୋଡ଼ିଦେଲା । ନିଜ ଗାଲରେ ଚଟକଣା ମାଇଲା । ତୁଳସୀପତ୍ର ଆଉ ପାଣି ଖାଇଲା । ମୋ ହାତରେ ବି ଦେଲା । ମୁଁ ପାଦୁକ ପାଇ ମୁଣ୍ଡରେ ହାତ ପୋଛିଦେଲି ।

ପଚାରିଲି—ବୋଉଲୋ, ତୁ ନିଜ ହାତରେ କାନନାକ ମୋଡ଼ିଦେଇ ଗୃପୁଡ଼ା ମାରିଦେଲୁ କ'ଣ ପାଇଁ ? ପୁଣି ଥିଇରି ଥିଇରି । ଜୋରରେ ଗୃପୁଡ଼ା ମାରି ହେଇଥିଲେ ସିନା କାଟିଥାନ୍ତା । ଭଲ ଲଗିଥାନ୍ତା ।

ସେ କହିଲା—ମା' ପାଖରେ ମୋଡ଼ି ହଉଥିଲି ପରା ।

ପଚାରିଲି—କାଇଁକି ମୋଡ଼ିହେଲୁ ନା ?

ତୋ ମା', ବାପା, ସାର୍ ତୋ କାନମୋଡ଼ି ଚଟକଣା ମାରନ୍ତିନି ? ଖାଇନୁ ? ଏତେ ଖାଉଚୁ ପରା । ମନେରହୁନି । ତତେ କହନ୍ତିନି କି କାନ ମୋଡ଼ି ଗୃପୁଡ଼ା ମାରିହବାଲାଗି ?

ମୁଁ ସିନା ଚଗଲା ହେଲେ, ପାଠ ନ ପଢ଼ିଲେ ସେମିତି କହନ୍ତି । ତୁ କ'ଣ ମୋ ପରି ହଉଚୁ କି ? ତୁ ଚଗଲା, ଦୁଷ୍ଟ ଖରାପ ପିଲା ।

ସେ ହସିଲା । କହିଲା—ତୁ ଯେତେ ଖୁଣ୍ଟି ବାହାର କରୁଚୁ, ମାଡ଼ ଖାଇବୁନୁ ତ, କ'ଣ ଗାଈଗୋରୁ ଖାଇବେ ?

ପଚାରିଲି—ବୋଉଲୋ ଖୁଣ୍ଟ କ'ଣ ? ଗାଈ ବନ୍ଧା ହ'ନ୍ତିଟି । ମୁଁ କ'ଣ ଛେଳି କି ଗାଈ ହେଇଚି ଯେ ବନ୍ଧା ହେବି ?

ନାଇଁ ତୁ ତ ଷଣ୍ଢ, ତତେ କିଏ ବାନ୍ଧିବ ? କାହାର ଏଡ଼େ ସାହସ ? ବାପ ନୃସିଂହ ମହାପ୍ରଭୁଙ୍କ ଷଣ୍ଢ ଥିଲା । ପୁଅ ହବନି ?

ହଉ ହେଲେ ହେଲି—ମୋ ବାପା ଷଣ୍ଢ, ମୁଁ ଷଣ୍ଢ । ସମସ୍ତଙ୍କୁ ଭୁଷିବୁ । ତୁ ଆଗ କହ—କାଇଁକି କାନନାକ ମୋଡ଼ି ଗୃପୁଡ଼ା ମାରିହେଲୁ ?

ମୋର ମନ ହେଲା ମାରିହେଲି ।

ତୁ ମିଛ କହୁଚୁ । ମତେ ମା' କହିଲେ ଯାଇ ମାରିହୁଏ । ତତେ ଠାକୁର କହି ନାହାନ୍ତି, ଆଉ ତୁ ମାରି ହେଲୁ । ବୋଉଲୋ, ଠାକୁର କ'ଣ କଥା କହନ୍ତି ?

ହଁ କହନ୍ତି ।

କେମିତି କହନ୍ତି ? ତୁ ଶୁଣିଚୁ ?

ମନେ ମନେ, ଚୁପ୍‌ଚାପରେ କହିଦିଅନ୍ତି ।

ମନେ ମନେ କହନ୍ତି ତ, ତମେ କେମିତି ଶୁଭେ ? ମତେ ଶୁଭୁନି ତ ?

ବୋଉ ଚନ୍ଦନ ଘୋରି ମୋ ମୁଣ୍ଡରେ ମାରି ଦଉଦଉ କହିଲା— ଠାକୁରଙ୍କୁ ଆମେ ମନେ ମନେ ଡାକୁ । ସେ ଶୁଣନ୍ତି । ଠିକ୍ ସେମିତି ସେ ମନେ ମନେ କହିଲେ, ଆମେ ଶୁଣୁ । ବୁଝିଲୁ ?

ମୁଁ ରାଗିଯାଇ କହିଲି—ଭୁଟା ସୁଉଦୁ ମିଛେଇ । ତୁ ଶୁଣିନୁ କି, ମନ୍ଦିରରେ ନନାମାନେ ଏଡ଼େ ବଡ଼ ପାଟିରେ କହନ୍ତି—ହେ ମହାପ୍ରଭୁ, ହେ ମା' ବିଶ୍ୱେଶ୍ୱରୀ । ତୁ ଶୁଣିନୁ ? ଭୋଗ ଦେଲେ ମୋ ନାଁ, ବାପାଙ୍କ ନାଁ, ଗାଁ ନାଁ ପଚାରନ୍ତି । କହନ୍ତି, ଲିଟୁକୁ ଭଲ କରିଦିଅ । ତାକୁ ବହୁତ ପାଠ ଦିଅ । ତା ମନକାମନା ପୂର୍ଣ୍ଣ କର । ମୁଣ୍ଡରେ ସିନ୍ଦୂର, ଚନ୍ଦନ ମାରିଦିଅ । ହାତରେ ଧଣ୍ଡାପାଦୁକ ଦିଅନ୍ତି । ନନା ବଡ଼ପାଟିରେ ଚଲେଇଲେ, ଠାକୁର କାହିଁକି ସେମିତି କହିବେନି ? ସେ ତ ଆଉରି ବଡ଼ପାଟିରେ କହିବା କଥା । ଠାକୁରଙ୍କ ପାଟି ଫିଟେନା । ସେ କିଛି କହନ୍ତିନି । ଭୁଟା ଗଧୀ, ମିଛେଇ ।

ବୋଉ ମତେ ଗେଲକରି କହିଲା—ଛି, ହୁଣ୍ଡାଟା । ଠାକୁରଙ୍କୁ ସେମିତି ସବୁ କହନ୍ତି ? ସେ ପରା ଆମକୁ ଜନମ ଦେଇଛନ୍ତି । ସେ ଯୋଉ ବୁଢ଼ୀମା ସେଠି ଖଟୁଲି ଉପରେ ବସିନି, ସେ ପରା ତୋ ବାପାଙ୍କୁ, ମଝିଆ ବାପା, ସାନ ବାପା, ଉଷାମା, ତତେ, ଟୁଲୁ ସମସ୍ତଙ୍କୁ ଜନ୍ମ ଦେଇଛି । ସେ ଆମକୁ ଯାହା କଉଛି, ଆମେ କରୁଛୁ ।

ସେ ମା' ମତେ, ତତେ, ମା'ଙ୍କୁ, ବାପାଙ୍କୁ ସମସ୍ତଙ୍କୁ ଜନ୍ମ ଦେଇଛନ୍ତି ? ଏତେ ଲୋକଙ୍କୁ ?

ଖାଲି ତତେ ମତେ ନୁହେଁ, ତୁ ଯାହା ଦେଖୁଚୁ ସବୁ ତାଙ୍କର ପରା ।

ମୁଁ ରାଗିଯାଇ କହିଲି—ଧେତ୍ ମିଛେଇ । ଏ ମାଟି, ଗଛ, ଇଟା ସମସ୍ତଙ୍କୁ ?

ହଁ ସମସ୍ତଙ୍କୁ । ମାଟି, ଗୋଡ଼ି, ପଥର, ମଣିଷ, ବଳଦ, ଛେଳି, ବାଘ, ଭାଲୁ, ଗଛ, ଫୁଲ, ଫଳ ଯାହା ଦେଖୁଛୁ ସବୁ । ସେ ଆମ ସମସ୍ତଙ୍କ ମା' । ଦେଖୁନୁ, ସମସ୍ତେ ତାଙ୍କୁ ଖାଲି ମା' ମା' ବୋଲି ଡାକୁଛନ୍ତି । ଗଛ, ଫୁଲ, ଫଳ, ଚଢ଼େଇ, ପଥର ମାଟି ସମସ୍ତେ ।

କାହିଁ ମତେ ଶୁଭୁନି ତ ! ସେମାନେ କେମିତି କହୁଛନ୍ତି କି ?

ସେମାନେ ତାଙ୍କ ଭାଷାରେ ଡାକୁଛନ୍ତି । ମନେ ମନେ କେତେ କଥା କଉଛନ୍ତି । ତୁ ଗଛ, ମାଟି, ପଥର, ଟିଣ, ଗାଈ, ଛେଳିକୁ ବାଡ଼େଇଲେ ସେମାନେ ଶବ୍ଦ କରନ୍ତିନି ? ସେମାନେ ତାଙ୍କ ଭାଷାରେ ସେଇ ମା'କୁ ଡାକନ୍ତି । ମା' ତାଙ୍କ କଥା ଶୁଣେ । ସେ ସମସ୍ତଙ୍କୁ ଭଲ ପାଏ ।

ହୁଁ, ସେ ସମସ୍ତଙ୍କୁ ଜନମ କରିଚି ଯେ, ତୁ କେମିତି ମତେ କଉଥିଲୁ ବାପା ଆଉ ମୁଁ ବଢ଼ିପାଣିରେ ଭାସି ଆସିଥିଲୁ ବୋଲି ? ତୁ ବି ଭାସି ଆସିଥିବୁ । ମା' କ'ଣ ସମସ୍ତଙ୍କୁ ଖାଲି ବଢ଼ିପାଣିରେ ଭସେଇଦିଅନ୍ତି । ଭାରି ଦୁଷ୍ଟ ମା'ଟା । ଟୁଲୁକୁ ତ ବାପାମା ଯାଇ ଡାକ୍ତରଖାନାରୁ କିଣି ଆଣିଥିଲେ । ଠାକୁର ଦେଲେ ବୋଲି କେମିତି କହୁଚୁ ? ତୁ, ବାପା, ସମସ୍ତେ ମିଛ କହୁଛ । ରହିଥା, ମା' ପାହାର ଦେବେ ଯେ, କାନ୍ଦୁଥିବ ।

ହଁ, ସେଇ ମା' ତ ସବୁ କରୁଚି ନା । ତୁ ବଡ଼ହେଲେ ସବୁ ଜାଣିବୁ । ସେ ଆମକୁ ଯାହା କହୁଚି, ଆମେ ତାହା କରୁଚେ ।

ତା'ହେଲେ ମୁଁ ଖେଳିଲେ, ଗଛ ଚଢ଼ିଲେ ତମେ ସବୁ କାହିଁକି ମାରିବ, ଗାଳି ଦବ, ପଦାକୁ ଗୁଡ଼ିବନି ?

ମା' ତତେ ଗଛ ଚଢ଼ିବାକୁ କହିଲା । ବଡ଼ବାପାଙ୍କୁ କହିଲା—ସେଇବାଟେ ଯା । ଲିଟୁ କାନ୍ଦୁଚି । ତାକୁ ଘରକୁ ନେଇଯିବୁ । ସେ ତତେ ଓହ୍ଲେଇଆଣି ଘରେ ଗୁଡ଼ିଦେଲେ । ମା'କୁ କହିଲେ ଧୋଇଧାଇ ଦବାଲଗି । ମତେ କହିଲେ—ଜାମା, ପେଏଁଟ ପିନ୍ଧେଇ ଖୁଆଇ ଦବାଲାଗି । ତା'ପରେ ତତେ କହିବେ ପାଠ ପଢ଼ିବାଲାଗି । ମା'କୁ କହିବେ ମାଡ଼ ଦବାଲାଗି । ବୁଝିଲୁ ?

ମୁଁ କହିଲି—ଖାଲି ସେତିକି ନୁହେଁଲୋ ବୋଉ । ତତେ କହିବେ କାନନାକ ମୋଡ଼ିହେଇ ଚଟକଣି ଖାଇବାଲାଗି । ଖାଇସାରିଲା ପରେ ପାନ ଭାଙ୍ଗୁଥିଲାବେଳେ ଢୋଳେଇବାଲାଗି । ବାଡ଼ିରୁ ଜାଳ ଭାଙ୍ଗିବାଲାଗି । ମାଟିଆଳୁ, ସାରୁ ଖୋଳିବାଲାଗି । ବାପାଙ୍କୁ କହିବେ ତାସ୍ ଖେଳିବାଲାଗି । ମା'କୁ କହିବେ ସବୁବେଳେ ଲିଟୁ ଲିଟୁ ହବାଲାଗି । ଉଷାମାଙ୍କୁ କାମ କରିବା-ଲାଗି । ଲିଟୁକୁ ଚଗଲା ହେବାଲାଗି, ଆଉ ତୋ ଦଦ ଖାଇବାଲାଗି । ନାଇଁଲୋ ବୋଉ ? ବୋଉଲୋ, ତତେ ଆଉସବୁ କ'ଣ କହିଲେ କଉନୁ କାହିଁକି ? ତୁ କ'ଣ ମା'କୁ କହୁଚି କହନୁ ?

ବୋଉ ହସି ହସି କହିଲା—ମୁଁ ପରା ମା'କୁ କହିଲି—ମୋ ବୁଢ଼ାକୁ ଭଲ ବୁଦ୍ଧି ଦିଅ । ତାକୁ ଏତେ ଚଗଲା କର ନାହିଁ । ସେ ବାଳୁତ ପିଲା । କିଛି ଜାଣିନି । ସେ ଯାହା କରୁଛି ସବୁ ଭୁଲ୍ ମୋର । ତାକୁ ତୁ ବଡ଼ ମଣିଷ କର । ତାକୁ ସବୁବେଳେ ସାହା ହେଇଥା । ଚଗଲାଟା କ'ଣ କରୁଛି କିଛି ଜାଣି-ପାରୁନି । ମୁଁ ଯେମିତି ଏତିକି କହିଛି, ସେ ସାଙ୍ଗେ ସାଙ୍ଗେ କହିଲେ—ହଉ ହଉ, ତୁ ଲିଟୁଙ୍କୁ କହିଦେ, ସେ ଆଉ ଚଗଲା ହବନି । ସେ ତ ସବୁଦିନେ ମତେ ପ୍ରାର୍ଥନା କରୁଛି । ନମସ୍କାର କରୁଛି । ଧୂପ ଦଉଚି । ଘଣ୍ଟି ବଜେଉଛି । ମୋ ଭୋଗ, ଧଣ୍ଡା ଖାଉଛି । ଭଲ ପାଠ ପଢ଼ୁଛି । ସେ ଭାରି ଭଲ ପିଲା । କହିଦେ, ସେ ଆଉ ଗଛରେ ଚଢ଼ିବନି । ସାପ ଅଛି । କାମୁଡ଼ିଦବ । ଗଡ଼ିଆରେ ବୁଡ଼ିବନି । ବୁଡ଼ିଯିବ । ପାଣି ପିଇଯିବ । ଖରାବେଳେ ଯାଡ଼େ ସ୍ୟାଡ଼େ ବୁଲାବୁଲି କରିବନି । ଡାଆଣୀ ଫାଆଣୀ ଭୂତ ଫୂତ ଅଛନ୍ତି । ଡରେଇବେ । ପିଲାଲୋକ ଡରିବ । ଯିଏ ଯାହା ଦବ ଖାଇବନି । ଯିଏ ଡାକିବ, ତା ସାଙ୍ଗରେ ପଳେଇଯିବନି । ବାପା, ମା', ସାର୍, ବଡ଼ଲୋକ-ମାନଙ୍କର କଥା ମାନୁଥିବ । ମୁଁ ତାକୁ ଭାରି ଭଲ ପାଏ । ସବୁବେଳେ ତା ପାଖେ ପାଖେ ଅଛି । ମୋ କଥା ମାନିଲେ ତା'ର ଗୋଡ଼ରେ କଣ୍ଟା ବି ବୋହିବନି । ଏମିତି କେତେ କଥା । ତୁ ତା କଥା ମାନିବୁ ତ ?

ମୁଁ କହିଲି—ବୁଝିଲୁ ବୋଉ, ମା'ତ ସବୁବେଳେ ମୋ ପାଖେ ପାଖେ ଅଛି । ମୁଁ ଗଛରେ ଚଢ଼ିବି, ଗଡ଼ିଆରେ ବୁଡ଼ିବି, ଖରାବେଳେ ଖେଳିବି । ମୋର କିଛି ହବନି । ତୁ ସବୁବେଳେ ତା ଆଗରେ ବସି କାନନାକ ମୋଡ଼ ହଉଥିବୁ । ଗୁପୁଡ଼ା ଖାଉଥିବୁ ।

ବୋଉ ମୋ କଥା ଶୁଣି ପୁଣି ହସିଲା । କହିଲା—ଛି, ହୁଣ୍ଡାଟା । ତୋ ମୁଣ୍ଡକୁ କୋଉଠୁ ଏତେ ବୁଦ୍ଧି ଆସୁଚି କେଜାଣି ? ଯା, ତା ପାଖରେ ମୁଣ୍ଡିଆ ମାରିକି ଶୋଇପଡ଼ିବୁ ଯା । ସେ ତତେ ଶୁଆଇ ପକେଇବ । ଗେଲ କରିବ । ଆଉଁସିଦବ । ମୋଡ଼ିଦବ । ପାଠ ଭୁଲି ଯାଇଥିଲେ—ବତେଇଦବ ।

ମୁଁ ମୁହଁମୋଡ଼ି କହିଲି—ଉଁ, ଇଏ ଯେମିତି ଦେଖିଛି ।

ସେ କହିଲା— ହଁଲୋ ବାପା, ମୁଁ ଦେଖିଛିପରା ।

ସେ ଦେଖିବାକୁ କେମିତିଆ କହିଲୁ ?

ବୋଉ ମତେ କୋଳରେ ବସେଇ କହିଲା—ହେଇ ଦେଏଖେ । ସେଇ ଖଟୁଲି ଉପରେ ବସିଛନ୍ତି । ହଳଦୀ ଗୁରୁଗୁରୁ ଲୁଗା ପିନ୍ଧିଛନ୍ତି । ସିନ୍ଦୁର, କଳା, ଚନ୍ଦନ, ଫୁଲ, ମୁକୁଟ ନାଇଛନ୍ତି । ଧାନବାପା ତାଙ୍କୁ ଗାଧେଇଦେଇଛନ୍ତି । ଖାଇବାକୁ ଦେଇଛନ୍ତି । ସଞ୍ଜରେ ପୁଣି ଖାଇବାକୁ ଦେବ । ବସ୍ତ୍ର ଦେବ । ବିଛଣା ପକେଇ ଶୁଆଇଦେବ । ସେ ମା' ପରା ।

ମୁଁ କହିଲି—ଛିଃ, ତୁଟା କହୁ ଜାଣିନୁ । ଆମ ସ୍କୁଲରେ ଯୋଉ ସରସ୍ୱତୀ ହେଇ ନ ଥିଲେ ? ସେ ତ ଧଳା । ଆମ ଗାଁରେ ଯୋଉ ଠାକୁରାଣୀ ନାହାନ୍ତି ? ସେ ତ କଳା । ଆଉ ତୁ କହୁଚୁ ହଳଦିଆ ।

ବୋଉ କହିଲା—ଓଃ ତତେ କେତେ ଏବେ କହିବି ? ସେ କେତେ-ବେଳେ କଳା, କେତେବେଳେ ଧଳା, କେତେବେଳେ ନାଲି ତ କେତେ-ବେଳେ ହଳଦୀ । ହେଲା । ତାଙ୍କୁ ଯୋଉ ରଙ୍ଗର କହିଲେ ଚଳିବ ।

ମୁଁ ପୁଣି ପଚାରିଲି—ବୋଉଲୋ, ତୁ ତ କହୁଥିଲୁ ତାଙ୍କର ହାତ ଅଛି । ଗୋଡ଼ ଅଛି । ପାଟି, ଆଖି, କାନ, ନାକ ସବୁ ଅଛି । ସେସବୁ ଆଡ଼େ ନିଜର ଇଚ୍ଛାରେ ବୁଲୁଛନ୍ତି । ତୁ କାଇଁକି ତାଙ୍କୁ ଗାଧେଇଦଉଚୁ । ହଳଦୀ ମାରିଦଉଚୁ । ସଜ କରିଦଉଚୁ । ଭୋଗ କରୁଚୁ । ସେ ତ କିଛି ଖାଉ ନାହାନ୍ତି । ଭୋଗ ତୁ ଖାଉଛୁ । ମୁଁ ଖାଉଛି । ଉଷାମା ଖାଉଛି । ସମସ୍ତେ ଖାଉଛନ୍ତି । ତାଙ୍କଲାଗି ତୁ ଖାଇଦଉଛୁ । ଆମେ ତ ସବୁ କଲେ । ସିଏ କ'ଣ କରୁଛନ୍ତି ? ଖାଲି ବସିଛନ୍ତି ।

ଆରେ ହୁଣ୍ଡା, ମା' ତତେ ସବୁଦିନେ ଗାଧେଇ ଦଉନି ? ସଜ କରିଦଉନି ? ଖୁଆଇ ଦଉନି ? କରୁଛିଟି ?

ହଁ ମୋ ମା'ତ ନିଜେ ଗାଧୋଉଛି । ସଜ ହଉଛି । ରାନ୍ଧୁଛି । ଖାଉଛି । ପାଇଖାନା ଯାଉଛି । ମୁତୁଛି । ତୋ ମା' କ'ଣ କରୁଛି କି ?

ତୋ ମା' ଯଦି ତତେ ଗାଧୋଇ ନ ଦବ, ଖାଇବାକୁ ନ ଦବ, ତୁ କ'ଣ କରିବୁ ? ଏଇ ଯୋଉ ମା' ବସିନି ? ଆମେ ତାଙ୍କୁ ଯେମିତି କରୁଛୁ, ସେ ଆମକୁ ସେମିତି ହବାଲାଗି କହୁଛି । ତା'ର ଭଲ କାମ କରିବାପାଇଁ ଆମକୁ କହୁଛି । ଆମେ ଯାହା ଦଉଚୁ ସେ ସାଙ୍ଗେ ସାଙ୍ଗେ ଖାଉନି । କହୁଛି—ମୁଁ ସବୁ ଖାଇଦେଲେ, ତମେ କ'ଣ ଖାଇବରେ ପିଲେ ? ତମେ ଆଗ ଖାଇପିଇ ଭଲରେ ରୁହ । ତମେ ଭଲରେ ରହିଲେ ମୋର ଭଲ ।

ସେ ନ ଖାଇ ନ ପିଇ ବଞ୍ଚିଛି କେମିତି ? ବୋଉ, ତୁ ମତେ ସିନା ଆଗ ଦଉ, ପଛରେ ତ ଖାଉ । ଉପାସ ରହୁ ନା ତ । ମା' ତ ଖାଇ ନ ଥିଲେ ମୋ ଉପରେ ଖାଲି ଚିଡ଼ ଚିଡ଼ ହୁଏ ।

ଚିଡ଼ ଚିଡ଼ ହୁଏ ଯେ । ତୁ ଭଲ ଜିନିଷ ସବୁ ଖାଇଦେଲେ, ସେ କ'ଣ ମନା କରେ ? ତୁ ସବୁଯାକ ଭୋଗ ଖାଇଦେଲୁ । ମତେ ଦେଇଚୁ କି ? ତୁ ମନ ଖୁସିରେ ଯେମିତି ସବୁ ଖାଇଦେଲୁନା, ମୋ ପେଟ ପୂରିଗଲା । ଠିକ୍ ସେମିତି ଏଇ ମା'ନା ଆମପରି ପେଟୁମାନଙ୍କୁ ସବୁ ଦେଇଦଉଚି । ଆମେ ସବୁ ଖାଇ ଦଉଛେ । ଆମକୁ ଦେଖି ଦେଖି ତା ପେଟ ପୂରିଯାଉଛି । ସେ ପରା ଆମ ସମସ୍ତଙ୍କର ମା' । ସମସ୍ତଙ୍କୁ ଦେଇ ଦେଇ ତା'ର ଆଉ ଖାଇବାକୁ ବେଳ ଅଣ୍ଟୁନି । ତୁ ଟୁଲୁ ସିନା ମା'ର ବାଇଗା ପୁଅ । ତା'ର ତ ସମସ୍ତେ । ତାକୁ ଯିଏ ଯେମିତି କରୁଛି, ଡାକୁଛି, ସେ ସେମିତି ସେମାନଙ୍କୁ ରଖିଛି । ସେମାନଙ୍କ କଥା ଶୁଣୁଛି ।

ଆଉ ତୁ କହିଲୁ,—ସେ ଯାହା କହୁଛି, ଆମେ ତାହା କରୁଛୁ । ଭୁଟା ହୁଣ୍ଡୀଟା । କିଛି ଜାଣିନୁ । ତୋ ମା' ପାଖରେ ବସି ତୁ ସବୁବେଳେ କାନ୍ଦୁଛୁ । କାନନାକ ମୋଡ଼ି ହଉଚୁ ।

ବୋଉ କହିଲା—ବାଳୁଙ୍ଗା ମେଞ୍ଚଡ଼ି ବକଟେ, କେତେ କଥା ପଗ୍ଭରୁଛି । ଆଉ କହିପାରିବିନି । ମୁଣ୍ଡ ବୁଲେଇଲାଣି । ଉଠ । ଚାଲ ।

ମା' ଆସି ବୋଉକୁ ଖାଇବାକୁ ଡାକିଲା । ବୋଉ ଯେମିତି ନଇଁଛି, ମୁଁ ତା ପିଠିରେ ନାଉ ହେଇପଡ଼ି କହିଲି—ମା'ଲୋ, ବୋଉକୁ ତା ମା' ଖାଇବାକୁ ଦେଇଛି । ସେ ଆଉ ଖାଇବନି ।

ମା' ବିରକ୍ତ ହେଇ କହିଲା—ଥାଉ, ଆଉ ବେଶୀ କଥା କହନା । ବୋଉକୁ କାଟିବ । ଓହ୍ଲାଉଚୁ, ନା ଦେଖିବୁ ?

ବୋଉ ନଇଁ ନଇଁ ଚାଲିଥାଏ । ମୋ ପିଠିରେ ଛନ୍ଦି ଦେଇଥାଏ ହାତ ଦୁଇଟି । କାଳେ ପଡ଼ିଯିବ । ମା' ଯେମିତି ପାଟି କରିଛିନା, ତା ପିଠିରୁ ଡେଇଁପଡ଼ିଲି । କହିଲି—ମା'ଲୋ, ବୋଉ କେମିତି ଚାଲୁଛି ଦେଖିବୁ ? ବୋଉ ପରି ନଇଁ ନଇଁ ଚାଲିଲି । ସମସ୍ତେ ହସିଲେ ।

ବୋଉ କହିଲା—ମା'ଲୋ, ଏଡ଼କ ବାଳୁଙ୍ଗା ହେଇଛି । କୋଉଠୁ ଏତେ ବୁଦ୍ଧି ଆଣିଛି କେଜାଣି ? ଠାକୁରଘରେ ମୋ ମୁଣ୍ଡ ଖରାପ

କରିଦେଲାଣି । ଢାଇ ଦଶମାସିଆ ନ ହେଲେ ତୋ ପୁଅକୁ କିଏ ସମ୍ଭାଳିବ ? ମୋର ଗୋଟାଏ ବାଳୁଙ୍ଗାକୁ, ତୋର ଗୋଟାଏ ବାଇଡଙ୍କ । ତୁ ବୋଲି ସମାଳିଚୁ ଏ ହଳଙ୍କୁ । ବୋଉ ଯେମିତି ଖାଇବସିଛି, ମୁଁ ସାଙ୍ଗେ ସାଙ୍ଗେ ତା ଦଦ ଖାଇଦେଲି ।

ମା' କହିଲା—କାହିଁକି ସବୁବେଳେ ବୋଉ ସାଙ୍ଗରେ ନାଗିଚୁ, କହିଲୁ ? ମେଞ୍ଚଡ଼ ଟୋକା ଅତି ହେଇଯାଉଛି । ଦେଖିବୁ ଏଇକ୍ଷିଣା ?

ମାଡ଼ ଭୟରେ ମୁଁ ଚୁପ୍‌ଚାପ୍ ବୋଉ ପାଖରେ ବସିଲି ।

ସେ ମତେ ଖୁଆଇଦେଲା । ମା'କୁ ବି ଡାକିଲା ତା ସାଙ୍ଗରେ ଖାଇବାଲାଗି । ଆଉ ଟାଉଙ୍କା ବିଲେଇଭଳିଆ ମା'ଟା ସାଙ୍ଗେ ସାଙ୍ଗେ ତା ପାଖରେ ଆସି ବସିପଡ଼ିଲା ।

ମୁଁ କହିଲି—ଏ ଉଷାମା, ତୁ ଆସୁନୁ । ଆ ବସ । ଆମେ ସମସ୍ତେ ଖାଇବା । ବୋଉ ଖାଲି ବସିବ । ଆମେ କେମିତି ଖାଉଚୁ ଖାଲି ଦେଖୁଥିବ । ଦେଖୁ ଦେଖୁ ତା ପେଟ ପୂରିଯିବ ।

ମୋ କଥା ଶୁଣି ସମସ୍ତେ ହସିଲେ ।

ବୋଉ ତୋଟିରେ ଲାଗିଲା । କାଶିଲା ।

ମା' ଯାଇ ତା ପିଠି ଆଉଁସିଦେଲା । ବାଁ ହାତରେ ଆଖିରୁ ପାଣି ପୋଛୁ ପୋଛୁ କହିଲା—"ବାଳୁଙ୍ଗାଟା" ।

## ॥ ଆଠ ॥

ଯେତେ କହିଲେ ବି ବାପା କି ମା' କେହି ମୋ କଥା ଶୁଣିଲେନି, ଓଲଟି ଗର ଗର ହେଲେ । ତାଙ୍କ ତାଙ୍କ ଭିତରେ କଳି କଲେ ।

ବାପାଙ୍କୁ କହିଲି—ମୁଁ ଟିଉସନ ହବାକୁ ଯିବି । ନ ଗଲେ ସାଆରେ ବାଡ଼େଇବେ । ସବୁ ପିଲା ଯାଉଚନ୍ତି । ମୁଁ ନ ଗଲେ ଖରାପ ହବନି ?

ସେ ହସି ହସି ପଚାରିଲେ—ଆରେ ଟିଉସନ ପଢ଼ା ପୁଣି କ'ଣ ? ଟିଉସନ କ'ଣ ଗୋଟେ ପାଠ ? ଅଙ୍କ, ଇଂରାଜୀ, ସାହିତ୍ୟ, ଇତିହାସ,

ଭୂଗୋଳ ଏ ସବୁ ସିନା ପାଠ ଆଉ ବିଷୟ । ଏଗୁଡ଼ିକ ସବୁ ପଢ଼ାଯାଏ । ଆଉ ଟିଉସନ ପଢ଼ିବୁ କ'ଣ ?

ସାର୍ ତ କହୁଛନ୍ତି ଟିଉସନ ପଢ଼ । ସବୁ ପିଲା ତ ସେଥି କହୁଛନ୍ତି । ମୁଁ ଆଉ କ'ଣ କହିବି ? ତମେ କ'ଣ କହୁଛ କହୁନ—ମୁଁ କ'ଣ ମନାକଲି କି ?

ହଉ ବାପା, ସେ ଯୋଉ ପଢ଼ା ହଉ, ତମ କ୍ଲାସ୍‌ର ସବୁ ପିଲା କ'ଣ ଟିଉସନ ପଢ଼ିବାକୁ ଆସୁଛନ୍ତି ? ଜମା ନୁହଁ ।

ହଁ ବହୁତ ପିଲା ଆସୁଛନ୍ତି । ଯାହାର ପଇସା ନାହିଁ, ସେ ଆସୁନି ।

ଆଉ ଆମ ପାଖରେ କ'ଣ ଏତେ ପଇସା ଅଛି ? ତୁ କେମିତି ଜାଣିଲୁ ?

ସମସ୍ତେ ତ କହୁଛନ୍ତି, ତମ ପାଖରେ ବହୁତ ପଇସା ଅଛି । ତମେ, ମା' ଦୁହେଁ ତ ଚାକିରି କରୁଛ, ପଇସା ନାହିଁ କେମିତି ? ଆଉ କେତେଜଣ ରୋଜଗାର କଲେ ପଇସା ଆସିବ କି ? ମୁଁ ଯାଉନି ବୋଲି ସବୁଦିନେ ସାର୍ ପଚାରୁଛନ୍ତି—"ଲିଟୁ ତୋର ଆସିବା କଥା କ'ଣ ହେଲା ? କୋଉଦିନ ଆସିବୁ ? ତୋ ସାଙ୍ଗମାନଙ୍କର ପଢ଼ାପଢ଼ି ଆଗେଇଗଲାଣି । ଶୀଘ୍ର ନ ଆସିଲେ, ପଛେଇଯିବୁ । ହଇରେ, ତୋ ବାପା ମା' ଭାରି କାର୍ପଣ୍ୟ ନା ? ଏତେ ପଇସା କମାଉଛନ୍ତି—କ'ଣ କରୁଛନ୍ତି ସେସବୁ ? ତୋ ପଢ଼ିଲାବେଳକୁ ନାହିଁ । ହଉ ହଉ ଠିକ୍ ଅଛି । ମୁଁ ତତେ ମାଗଣା ପଢ଼େଇଦେବି । ତୁ କାଲିଠାରୁ ଆ । ସ୍କଲାରସିପ୍ ପରୀକ୍ଷା ଦବୁଟି ? ଭଲକରି ପଢ଼ାପଢ଼ି ନ କଲେ, କେମିତି ହବ ? ତୋ ଉପରେ ଆମର ଭରସା ଅଛି । ତୁ ଆ, କାଲି ଆ ।" ମୁଁ କାଲି ସକାଳୁ ଯିବି ବାପା । ସେ କିଛି ନେବେନି । ମାଗଣା ପଢ଼େଇବେ । ସତରେ, ମା' ଆଉ ତମେ ନା ଏକଦମ୍ କାର୍ପଣ୍ୟ ।

ମୋ କଥା ଶୁଣି ବାପା ହସିଲେ । ପଚାରିଲେ, ଆରେ କାର୍ପଣ୍ୟ ମାନେ କ'ଣ ?

କାର୍ପଣ୍ୟ ତ କାର୍ପଣ୍ୟ, ଆଉ ତା ମାନେ କ'ଣ ? ଏତେ ବଡ଼ ହେଲଣି । ଆମ ସାଆରେ ଜାଣିଛନ୍ତି । ତମେ କେମିତି ଜାଣିନ ?

ନାଇଁରେ ବାପା ମୁଁ ଜାଣିନି । ଜାଣିଥିଲେ, ପଚାରିଥାନ୍ତି କାହିଁକି ?

ବୁଝିଲ ବାପା, ଏଇଠି ତମର ଭୁଲ୍ । ତମେ ଟିଉସନ ପଢ଼ିନ, ଜାଣିବ କେମିତି ?

ମୋ କଥା ଶୁଣି ବାପାମା ଦୁଇଜଣଯାକ ଏଥର ହସିଲେ । ମା' ପାଖରେ ଗେହ୍ଲେଇହେଇ କହିଲି—ମା'ଲୋ, ତୁ ବାପାଙ୍କୁ କହ, ମୁଁ ଟିଉସନ ପଢ଼ି ଯିବି । ତୁ ନ କହିଲେ ସେ ଜମାରୁ ପଠେଇବେନି ।

ମା' ବିରକ୍ତ ହେଇ କହିଲା—ନା, ସେ ଟିଉସନ ଫିଉସନ ନାହିଁ । ତୁ ଯାହାସବୁ ବୁଝି ନ ପାରୁଚୁ, ପଚାରୁନୁ ? ମୁଁ ତ ସବୁବେଳେ କହିଦଉଚ୍ଛି । ବାପାଙ୍କୁ ଯାହା ପଚାରୁଚ୍ଛ—ସେ ବି ବତେଇଦଉଛନ୍ତି । ସ୍ୟାର୍‌ଙ୍କୁ କାଇଁକି ଯିବୁ ?

ମା' କଥା ଶୁଣି ମତେ ଭାରି ଖରାପ ଲାଗିଲା । ତାକୁ ଚିଡ଼େଇବାକୁ ଯାଇ କହିଲି—ବୁଝିଲୁ ମା', ତୁଟା କିଛି ଜାଣିନୁ । ସେଇଥିପାଇଁ ପରା ବୋଉ ତତେ କହିବ—ହୁଣ୍ଡୀ, ବାଘୁଣୀ । ବାପା କହିବେ ଗଧୀ । ତୁଟା ମାଡ଼ାମ ହେଇଛୁ । ମୁଁ ଯୋଉ ପାଠ ଜାଣିନି ସେ କଥା ଆମ ସାଆରେ ଜାଣିଛନ୍ତିନା ଆଉ, ତୁ କେମିତି ଜାଣିବୁ ? ତୁ କ'ଣ ମୋ ସାଆରେ ? ମତେ ପଢ଼ୋଉଚୁ ? ମୁଁ ଶ୍ରେଷ୍ଠ ପିଲାଟା ବୋଲି ସମସ୍ତେ ଖାଲି ଭୁଲେଇଦଉଛ, ମିଛ କହୁଛ । ମତେ ତ ଶୁଣୁନ, ତମ କଲେଜ ପିଲାମାନେ କେମିତି ଟିଉସନ ପଢ଼ୁଛନ୍ତି ? ସେମାନେ ବଡ଼ ବଡ଼ ପିଲାହେଇ ବୁଝିପାରୁ ନାହାନ୍ତି, ମୁଁ ସାନପିଲାଟା ସବୁପାଠ କେମିତି ବୁଝିଯିବି ?

ମା' କହିଲା—କାହିଁକି, ମୁଁ କି ତୋ ବାପା ତ ଟିଉସନ କରୁନୁ ?

ତମେ ସବୁ କାହିଁକି ଟିଉସନ କରୁନ ମୁଁ ଜାଣିନି କି ?

ବାପା କଅଁଳେଇ ପଚାରିଲେ—ଆମେ ଜାଣିପାରୁନୁ ପରା । ତୁ ଟିକେ କହିଲୁ ? ହଁ, ତମେ ଯେମିତି ଜମା ଜାଣିନ ? ତମେ ଓଡ଼ିଆ ପଢ଼ିଛ । ସେ ପାଠ ଭାରି ସହଜ । ତମେ ସବୁ ଗଧ ଗଧୀ ବୋଲି ସହଜ ପାଠ ପଢ଼ିଲ । କଷ୍ଟ ପାଠ ହେଇଥିଲେ ସିନା ପିଲା ଟିଉସନ ପଢ଼ିବାକୁ ଆସନ୍ତେ ।

ବାପା ହସି ହସି କହିଲେ—କାଇଁ ମୁଁ ତ ଟିଉସନ ଫିଉସନ ପଢ଼ିନି ?

ତମେ ତ ସହଜ ପାଠ ପଢ଼ିଲ, ଟିଉସନ ହେଉଥାନ୍ତି କ'ଣ ପାଇଁ ? ଇଂରାଜୀ ଘରକା ସିନା କଷ୍ଟ ପାଠ । ଖାଲି ଫେଲ୍ । ତମେ ଇଂରାଜୀ ପଢ଼ିଲନି କାହିଁକି ? କିଏ ମନା କରୁଥିଲା କି ? ଖାଲି ଟିଉସନ କରୁଥାନ୍ତି ।

ତେବେ ଗଧ ଗଧୀ ଓଡ଼ିଆ ପାଠ ପଢ଼ନ୍ତି ବୋଲି ତତେ କିଏ କହିଲା ?

ସିଏ କହିଲା, ମୁଁ କାହିଁକି କହିବି ? ତମେ ଯୋଉ ରାଗୀ ଲୋକନା, ତାଙ୍କୁ ଯାଇ ପଚାରିବ । ଗାଳିଦବ । ସମସ୍ତେ ତ କହୁଛନ୍ତି । ମୁଁ କାହିଁକି କାହା ନାଁ କହିବି ? ମାଡ଼ ଖାଇବି ।

ମୋ କଥା ଶୁଣି ବାପା ଗୁମ୍ ମାରି ବସିପଡ଼ିଲେ । ଏକଦମ୍ ଚୁପ୍‌ଚାପ୍ । ମା'କୁ ଚା' କରିବାକୁ କହିଲେ । ରାଗିଗଲେ, ମନ ଦୁଃଖ କଲେ ସେ ଖାଲି ଚା' ପିଇବେ । ଚା' ଯେମିତି ଔଷଧ । ମତେ କହିଲେ—ହଉ ଆଉ ବେଶୀ କଥା ନ କହି ପଢ଼ । କୋଉଠି ବୁଝି ନ ପାରୁଛୁ ପଚାରେ । ତୋ କଥା ପରେ ବୁଝିବା ।

ମୁଁ ଆଉ ତାଙ୍କୁ କିଛି କହିଲିନି । ଭାରି ଡର ଲାଗିଲା । ସେ ଏମିତି ଗୁମ୍‌ମାରି ବସିଗଲେନା, ସେମିତି କେମିତି ଦିଶନ୍ତି । ସତେ ଯେମିତି ତାଙ୍କର କିଏ କ'ଣ ନେଇଗଲେ । କ'ଣପେଇଁ ଏମିତି ବସନ୍ତି କେଜାଣି ? ଏମିତି ବାପାନା, କାହାରି ନ ଥିବେ । ହସୁଥିବେ ହସୁଥିବେ, ପୁଣି ଟିକିଏ ପରେ ରାଗ, ଶୋଧା । ହେଲେ, ବାପାନା ବଢ଼ିଆ ପଢ଼ାନ୍ତି । ଆମ ସାଆରେ କିଛି ଜାଣି ନାହାନ୍ତି । କି ପାଠ ପଢ଼ିଛନ୍ତି କେଜାଣି ? ବାପାଙ୍କୁ ପଚାରିଲେ—କହିବେ, ବହିରେ ଯାହାସବୁ ଲେଖାହୋଇଛି, ଭଲକରି ପଢ଼ । ଥରେ, ଦୁଇଥର, ତିନିଥର, ଚାରିଥର—ବୁଝି ନ ପାରିବା ପର୍ଯ୍ୟନ୍ତ ପଢ଼ । ତା'ପରେ ଯାଇ ଯୋଉଠି ବୁଝି ନ ପାରିବୁ, ପଚାରିବୁ । ମୁଁ ପଢ଼ିସାରିଲା ପରେ ପଚାରିବେ—କୋଉଠି ବୁଝି ନ ପାରିଲୁ କହ । ମତେ ତ ଖାଲି ପଚାରୁଥିବେ, ମୁଁ କହୁଥିବି । କୋଉଠି ଟିକିଏ ଝୁଣ୍ଟି ପଡ଼ିଲେ ଚଟ୍‌କିନା ବତେଇଦେବେ । ମୁଁ ଆଗକୁ ମାଡ଼ିଯିବି । ମୁଁ ଉତ୍ତର ଦେଇସାରିଲା ପରେ କହିବେ—ତୁ ତ ନିଜେ ସବୁ କହିଦେଲୁ, ଆଉ ବୁଝିନୁ କ'ଣ ? ସବୁ ତ ଜାଣିଚୁ । ନିଜେ ଏମିତି ପଢ଼ିଦେଲେନା ଏକା ଥରକେ ମନେ ରହିଯିବ । ଆଉ ଜୀବନରେ ଭୁଲିବୁନି । ପାଠଗୁଡ଼ାକ କେତେ ସୋଜା ଦେଖିଲୁ ତ ? ନିଜେ କର । ମନଦେଇ ପଢ଼ । ଯୋଉଠି ବୁଝି ନ ହଉଛି ଆମକୁ ପଚାରେ ।

ବାପା ପଢ଼େଇଲେ ମଜା ଲାଗେ । ସାଆରେମାନେ ଏମିତି ପଢ଼ାନ୍ତିନି । କ'ଣ ଟିକେ ପଚାରିଲେ ବ୍ଲାକ୍‌ବୋର୍ଡ୍‌ରେ ଲେଖିଦେବେ । କହିବେ—ପିଲାଏ, ଯାହା ଲେଖିଦେଲି ସବୁ ଟିପିନିଅ । ଯିଏ ନ ଟିପିବ ମାଡ଼ । ତା'ପରେ ଆମକୁ ପଚାରିବେ—କ'ଣ ବୁଝିଲ ? ଆମେ ସବୁ ଏକାବେଳକୁ କହିବୁ ହଁ । ତା'ପରେ କହିବେ—ଏଥର ଯାହାସବୁ ପଢ଼ାହେଲା, ଲେଖିଆଣ । ଯିଏ ନ ଲେଖିଛ ପାଖ ପିଲାଙ୍କ ପାଖରୁ ଦେଖି ଠିକ୍‌କରି ଲେଖିନିଅ । ଆମେ ଦେଖାଦେଖି ହୋଇ ଲେଖିବୁ । ସାଆରେ ତାଙ୍କର ଚେଆରରେ ବସି ଟେବୁଲ୍ ଉପରେ ଗୋଡ଼ ଥୋଇଥିବେ । ନଇଲେ ବାହାରେ ଯାଇ ଆଉ କାହା ସାଙ୍ଗରେ କଥା ହଉଥିବେ । ଆମେ ଖାତାଗୁଡ଼ାକ ଟେବୁଲ୍ ଉପରେ ଗଦା କରିଦେଇ ଆସିବୁ । ସେ ନାଲି କଲମରେ ସବୁ ଖାତାରେ ଟିକ୍ ଚିହ୍ନ ମାରିଦେବେ । ଦସ୍ତଖତ କରିବେ । ଆମେ ଖାତା ନେଇ ଆସିବୁ । ଆମେ ବୁଝିଲେ କେତେ ନ ବୁଝିଲେ କେତେ ? ବେଳେବେଳେ ନିଜେ ଚେୟାର ଉପରେ ବସି ଆମକୁ କହିବେ ବ୍ଲାକ୍‌ବୋର୍ଡ୍‌ରେ ଲେଖିବାପାଇଁ । କୋଉଦିନ ସ୍କୁଲ ଆସିବେ ତ ଆଉ କୋଉଦିନ ନାହିଁ । କୋଉଦିନ ମଝିରୁ ପଳେଇବେ । କୋଉଦିନ ଆସିକରି ବି ପଢ଼େଇବେନି । କିଏ କୋଉଠି ଆସିଲେ, ତା ସାଙ୍ଗରେ ବସି ଗପ ମାରୁଥିବେ । ଆମର ଯୋଉ ନୂଆ ଦିଦି ଆସିଛନ୍ତି—ସାଆରଙ୍କର ତ ସବୁବେଳେ ଖାଲି ତାଙ୍କର ସାଙ୍ଗରେ ଗପ । କ'ଣ ଏତେ ଗପ ହୁଏନ୍ତି କେଜାଣି ? ଗପୁଥିବେ, ହସୁଥିବେ, ବାଦାମ ଖାଉଥିବେ । ପାଠ ପଢ଼େଇଲା-ବେଳକୁ ନାହିଁ । ଛି ।

ବାପା ବଢ଼ିଆ ପଢ଼ାନ୍ତି ସିନା, ହେଲେ ମଝିରେ ଯାହା ପଚାରିବେ, ଯଦି କହି ନ ପାରିଲ, ପିଠିରେ ଗୁମ୍ ଗୁମ୍ କରି ବସେଇଦେବେ । ତାଙ୍କ ରାଗୁଆ ମୁହଁକୁ ଦେଖିଲେ, ପାଠ ଆସୁଥିଲେ ବି ଭୁଲ୍ ହୋଇଯିବ । ଆଉ ଥରେ ଭୁଲ୍ ହେଲା ମାନେ ଗୋପାଳ । ଗୋପାଳ ଆରମ୍ଭ ହେଲେ ରକ୍ଷା ନାହିଁ । ସେ କେମିତି ଏତେ ଜୋର୍‌ରେ ମାରନ୍ତି କେଜାଣି ? ଜୋର୍‌ରେ ମାରିଲେ ଯେ କାଟେ, ଏ କଥା ସେ ବୁଝିପାରନ୍ତିନି । ଏମିତି ବାପା ଯେ, ସେ ମାରୁଥିଲା-ବେଳେ କାନ୍ଦିଲେ ବେଶୀ ମାଡ଼ । ନ କାନ୍ଦିକରି ବସିଲେ ଗୋଟାଏ-ଦିଇଟା । ଏଇଥିପାଇଁ ତ ତାଙ୍କୁ କିଛି ପଚାରିବାକୁ ମନ ହୁଏନା । ପଚାରିବି କାଇଁକି ? ମାଡ଼ ଖାଇବି କାଇଁକି ? ଦିନେ ଦିନେ ତାଙ୍କର କ'ଣ ମନ ହବ କେଜାଣି,

ନିଜଆଡୁ ପଚାରିଦେବେ । କହିପାରିଲେ ତ ଭଲ । ସୁନାପିଲା । କହି ନ ପାରିଲେ ପିଠିରେ ଗୋଟା ଚରିଯିବେ । ମାରନ୍ତି ସିନା, ପାଠ ବଢ଼ିଆ ।

ମାଆଟି କିନ୍ତୁ ସତରେ ଦୁଷ୍ଟୀ । ପଢ଼େଇଲାବେଳେ ଏଡ଼େ ବଡ଼ ପାଟି କରିବ । ଖାଲି କହିବ—"ବୁଝିଲୁ, ଆଁ ?" ମୁଁ ବି ବେଳେବେଳେ ତାକୁ କହେ, ବୁଝିଲୁ ଆଁ । ବାପା ବି କହିବେ—ହଇଓ, ବୁଝିଲ, ଆଁ ? ବାପାଙ୍କ କଥା ଶୁଣି ସେ ଚିଡ଼ିଉଠିବ । କହିବ—ଇଏ ଯେମିତି ତାଙ୍କ ପୁଅ ବି ସେମିତି । ଏଡ଼େ ବକଟେ ମେଞ୍ଚଡ଼, ସେ ପୁଣି ମା'କୁ ଠଟ୍ଟା କରିବ । ତା'ପରେ ରାଗ ଶୁଝେଇବ ମୋ ପିଠିରେ । ବାପାଙ୍କୁ କହିବ—ଏଥର ତମେ ତମ ଗୁଣମଣିଙ୍କି ପାଖରେ ରଖି ପଢ଼ାଅ । ଏଠି ରହୁନ ତ, ତା ପ୍ରତାପ ଜାଣିବ କୋଉଠୁ ? ସବୁବେଳେ ଖାଲି ଚଗଲା ହଉଛି । ପଢ଼ିବାକୁ କହିଲେ, ବସିକରି ଖେଳୁଛି । ଟିକିଲୁ ଚଗଲା ହେଲେ, ତା ପାଖରେ ଯାଇ ବସୁଛି । ସବୁବେଳେ ସେ ଛୁଆଟା ସାଙ୍ଗରେ ଲାଗୁଛି । ଯେତେକରି କହିଲେ ମାନୁନି । ପାଟି କରିବନି ଆଉ କ'ଣ କରିବ ? ମୋର ପାଟିଟା ଖାଲି ବାପପୁଅଙ୍କୁ ଦେଖାଯାଉଛି । ଇଏ ତ କହିବେ । ଯୁଆଙ୍କ ଦେଖାଦେଖି ପୁଅ ବି କହିବ—"ବୁଝିଲୁ, ଆଁ ?" ଏ ଖଣ୍ଡିକୁ କିଏ ସମ୍ଭାଳିବ ହୋ, ମତେ ତ ସମୟ ନାହିଁ । ଖରାବେଳିଆ ଛୁଆ । ମୁଁ ଏତେ ଜଗିପାରିବିନି ।

ମା' ଯେମିତି ଖରାବେଳିଆ ବୋଲି କହୁଛି—ମୁଁ ସାଙ୍ଗେ ସାଙ୍ଗେ ପଚାରିଲି—ବାପା, ମା ମତେ ଖରାବେଳିଆ କାହିଁକି କହୁଛି ।

ମୋ କଥା ଶୁଣି ବାପା ମା' ଆଡ଼କୁ ତେଡ଼େଇ କରି ଚାହିଁଲେ । କହିଲେ—ଏଥର ପୁଅକୁ ବୁଝାଅ । ମତେ କହିଲେ—ବୁଝିଲୁ ବାପା, ତୁ ଖରାବେଳେ ଜନ୍ମ ହେଇଥିଲୁ ତ । ସେଇଥିପାଇଁ ମା' ତତେ ସେମିତି କହୁଛି ।

ମା' ମତେ ପୁଣି ଗାରଡ଼େଇ ଚାହିଁଲା । କହିଲା—କଥା ଧରିବାକୁ ପୁଅ ଖଣ୍ଡେ । ପଢ଼ିଲାବେଳକୁ ନାହିଁ । ମୁଁ ତା ପାଇଁ ଏତେ ସମୟ ଦେଇ-ପାରିବିନି ।

ଆଉ କ'ଣ କରିବ ? ଟିଉସନ ପଢ଼େଇବାକୁ ପଠେଇବ—ପଠାଅ । ବାପା ସାଙ୍ଗେ ସାଙ୍ଗେ ରାଗିକରି କହିଲେ ।

ବାପାଙ୍କୁ ଗେହ୍ଲେଇହେଇ କହିଲି—ସାଆରେ କହୁଥିଲେ ମୁଁ ସ୍କଲାର୍‌ସିପ୍ ପରୀକ୍ଷା ଦେବି । ଟିଉସନ ପଢ଼ିବନି କେମିତି ?

ମୋ କଥା ଶୁଣି ବାପା ଠାଏକନା ଗୃପୁଡ଼ାଏ ଗାଲରେ ବସେଇଲେ । କାନ ଧରିକରି କହିଲେ—ପଢ଼ୁରୁ ନା ଫାଜିଲମି ବାହାର କରୁଛୁ ? କଲବ୍ୱକସି ଛୁଣ୍ଡେଇବ ପୁଅ । ଆମର ଦରକାର ନାହିଁ । ପଢ଼ିଲ-ବେଳେ ଖେଳ, ନା ? ଖାଲି ଟିଉସନ ଯିବୁ, ନା ? ରହ । ଦଉଚି ଆଜ ।

ମା' ଏଥର ମୋଆଡ଼ ଦେଇ କହିଲି—ତମେ ପିଲାଟାକୁ ଅନ୍ୟାୟ୍ୱରେ କାହିଁକି ପିଟୁଛ କହିଲ ? ନଜେ ଯାହା ବୁଝିଥିବ ସେଯ୍ୱା । ଖୁମ୍ୱଆଳୁ । ଦୁନିଆ ଯୁଆଡ଼େ ଯାଉଛି, ତମେ ସିଆଡ଼େ ଯିବ ନା ଆଉ ଗୋଟାଏ ନଆସ୍ୱା ବାଟ କରିବ । ସବୁ ପିଲା ତ ଟିଉସନ ହଉଛନ୍ତି । ଯୋଉମାନେ ସ୍କଲାରସିପ୍ ପରୀକ୍ଷା ଦବାକୁ ଯିବେ, ସାର୍‌ମାନେ ସେମାନଙ୍କୁ ଅଲଗା ପଢ଼ୋଉଛନ୍ତି । ଟିଉସନ ନ କଲେ, ପିଲାମାନେ ମାନସିକ ସ୍ତରରେ ଅଲଗା କଥା ଭାବୁଛନ୍ତି । ତମେ ତ ଜାଣିଛ—ଏ ଟିଉସନ ରୋଗ ବର୍ତ୍ତମାନ ସବୁଆଡ଼େ । କ୍ଲାସ୍‌ରେ ତ ପଢ଼ାପଢ଼ି ହଉନି । ଟିଉସନ ନାଁରେ ସେମାନେ ଘରେ ପିଲାମାନଙ୍କୁ ପଢ଼ୋଉଛନ୍ତି । ତମେ କ'ଣ ଜାଣିନ ଏ କଥା ?

ବାପା ବିରକ୍ତ ହେଇ କହିଲେ—ଓଃ, ତମେମାନେ ମୁଣ୍ଡଟାକୁ ଖରାପ କରିଦବ । ସମସ୍ତେ ଯାହା କରୁଛନ୍ତି, ତମେ ସେଇ କାମ କରିବ । ସମସ୍ତେ ଖରାପ୍ କାମ କଲେ, ତମେ କରିବ । ସମସ୍ତଙ୍କୁ ଯୋଉ ରୋଗ ହଉଚି, ତମକୁ ଯେ ସେଇ ରୋଗ ହବ, ଇଏ କ ବଚିତ୍ର ମାନସିକତା ?

ବାପା ରାଗିଲେ ଏମିତି କ'ଣ ସବୁ କଥାଗୁଡ଼ା କହନ୍ତି । ତାଙ୍କ କଥାରୁ ମୁଁ କଛି ବୁଝିପାରେନା । ଶୁଣିବାକୁ ମଜାଲାଗେ । ପଡ଼ୁଥାଏ, ତାଙ୍କୁ କଣେଇ କଣେଇ ଗୃହୁଁଥାଏ ।

ମା' ନରମ ସ୍ୱରରେ କହିଲି—ହଉ ବାପା, ତମେ ତମର ଯାହା କରୁଛ କର । ଯାହା ବୁଝିଥିବ, ସେଯ୍ୱା । ଆଉ ଟଳିବନି । ପଛରେ ଏଡ଼ିବ । କାହାର କ'ଣ ହେଇଯାଉଛି ?

"ଦେଖ୍, ମୋ ବୁଝିବା ମୋ ପାଖରେ ଥାଉ । ତମେ ବେଶୀ ଭଡ଼ ଭଡ଼ ହୁଅନା ।"

ତମେ କାହାରି କଥା ବୁଝିବନି ତ ସଂସାର କରୁଥିଲ କାହିଁକି ? ମୁଁ ଏକୁଟିଆ ମାଈକିନାଟିଏ ଏତେ କାମ କେମିତି କରିବି, ତମେ ସେ କଥା କହୁନା । ମୁଁ ତ ତାକୁ ପଢ଼ା ଦେବି । ସେ ପୋଡ଼ାମୁହାଁ ନ ପଢ଼ି ଯଦି ଖେଳିବ, ତା'ଲାଗି କ'ଣ ମୁଁ ପଢ଼ିବି ?

ବାପା ମା'ର କଥା ଶୁଣି ବେଶୀ ରାଗିଗଲେ । ଚଢ଼ାଗଳାରେ କହିଲେ—ଦେଖ, ମତେ ବେଶୀ ରଗାଅନା କହୁଛି । ମୁଁ ଯେ ତମମାନଙ୍କ ପାଖରେ ଅଦରକାରୀ, ଏ କଥା ମୁଁ ଭଲଭାବରେ ଜାଣେ । ତମର ବୁଝେଇବା ଦରକାର ନାହିଁ । ମୁଁ ଦୁଧଖିଆ ଛୁଆ ନୁହଁ । ମତେ ଆଶ୍ଚର୍ଯ୍ୟ ଲାଗୁଛି— ତମେମାନେ କେହି ଗୋଟାଏ ଅସଲ ସମସ୍ୟା ବୁଝିବାକୁ ଚେଷ୍ଟା ବି କରୁନ । ସମସ୍ତେ ଖାଲି ହୋଇରେ ମାତିଛ । ପିଲାମାନଙ୍କୁ ପଢ଼େଇବା ଖରାପ କାମ ବୋଲି ମୁଁ କହୁନି କି କହିନି । ଏବେ ଏଇଟା ଗୋଟେ ବ୍ୟବସାୟ ହୋଇ-ଗଲାଣି । ପ୍ରଥମରୁ ଏମ୍.ଏ. ଶ୍ରେଣୀ ପର୍ଯ୍ୟନ୍ତ ଖାଲି ଟିଉସନ, କିଛି ବହି । ସ୍କୁଲଠାରୁ କଲେଜ ପର୍ଯ୍ୟନ୍ତ ଗୋଟାଏ ଗୋଟାଏ ମାଷ୍ଟର ଗୃହଶାଳୀ ଖୋଲିଛନ୍ତି । ସକାଳୁ ରାତି ଦଶ ପର୍ଯ୍ୟନ୍ତ ଦିନସାରା ବେପାର ଚାଲିଛି । ଚାରିପାଞ୍ଚ ବ୍ୟାଚ୍ । ଏ ବେପାରୀ ଦଳକ ସ୍କୁଲ କଲେଜକୁ ପଢ଼େଇବାକୁ ଯାଉ ନାହାନ୍ତି । ମାସ ଶେଷରେ ଭଦ୍ରଲୋକଙ୍କ ପରି ଦରମା ନେଇ ଆସୁଛନ୍ତି । ଏଠି ପାଠ ପଢ଼େଇବା ଲକ୍ଷ୍ୟ ନୁହେଁ । ଲକ୍ଷ୍ୟ ଟଙ୍କା କମେଇବା । ଖାଲି କ'ଣ ସେତିକି ? ଟିଉସନ ପିଲାମାନଙ୍କୁ ପ୍ରଶ୍ନ କହିଦେବେ, ପରୀକ୍ଷାହଲ୍‌ରେ ଉତ୍ତର ବତେଇଦେବେ । ଗାଡ଼ ଧରି ଖାତା ଦେଖା ହଉଥିବା ଜାଗାଗୁଡ଼ାକ ବୁଲିବେ । ଖାଲି ଟଙ୍କା ଆଉ ଟଙ୍କା । ଏତେ ଟଙ୍କା କମେଇ କ'ଣ କରୁଛନ୍ତି କେଜାଣି ? ଜୀବନରେ କୋଉ ଶାନ୍ତି ଅଛି ? ଆଦର୍ଶ କଥା ପରିରେ କିଏ ? ତମେମାନେ କେହି ବୁଝୁନ । ଟିଉସନ ନାଁରେ କୁନି କୁନି ପିଲାମାନଙ୍କର ମୁଣ୍ଡକୁ ନଷ୍ଟ କରି ଦିଆହଉଛି । ସେମାନେ ନିଜେ କିଛି ଚିନ୍ତା କରୁନାହାନ୍ତି । ତାଙ୍କ ମୁଣ୍ଡ ବି କାମ କରୁନି । ସବୁ ଗଧ ହୋଇ ଯାଉଛନ୍ତି । ମାନସିକ ବିକାଶ ସମ୍ଭବ ହଉନି । ପାଠକୁ ଭେଦିବାଲାଗି ସେମାନଙ୍କ ଭିତରେ ଯୋଉ ପ୍ରଚଣ୍ଡ ଶକ୍ତି ଅଛି, ସେସବୁ ନଷ୍ଟ ହୋଇଯାଉଛି । ନିଜେ କାହିଁକି ମୁଣ୍ଡ ଖେଳେଇବେ, ପରିଶ୍ରମ କରିବେ ? ତାଙ୍କଲାଗି ଦଳେ ଚାକର ଯୋଗାଡ଼ ହୋଇଛନ୍ତିନା । ଭିଟାମିନ୍, ଟନିକ୍ ଖୁଆଇ ପିଲାମାନଙ୍କୁ ସୁସ୍ଥସବଳ ରଖିବା ସମ୍ଭବ କି ? ଯାହା ସ୍ୱାଭାବିକ

ତାକୁ ତମେ ସ୍ୱୀକାର କରୁନ କେମିତି ? ପିଲାକୁ ତ ସପନ ଦେଖୋଉନା । ଦୁନିଆକୁ ଦେଖିବା, ବୁଝିବାଲାଗି ସୁଯୋଗ ଦେଉନା । ତା ଭିତରେ ଥିବା ଜାଣିବାପାଇଁ ଆଗ୍ରହକୁ ନଷ୍ଟ କରିଦଉଚ । ସେମାନେ କ'ଣ ହେବେ ? ତମେ ଯଦି ଭାବୁଛ ତମ ପୁଅକୁ ଟନିକ୍ ଖୁଆଇ ମଣିଷ କରିବ ବୋଲି—କର । ମୋର କିଛି କହିବାର ନାହିଁ । ତମକୁ ମନା କରି ଆସୁଥିଲି । ଏ ପର୍ଯ୍ୟନ୍ତ ମାନୁଥିଲି । ଏ ମହାରୋଗଟି ଯେତେବେଳେ ତମକୁ କୁତୁକୁତୁ କଲାଣି, ସୁରୁ ହଉ । ଥରେ ଆରମ୍ଭ ହେଲେ—ତା'ପରେ ଗାଡ଼ି ଗଡ଼ିଲା । ମଜା ବାହାରିବ । ଆଉ ରୋକିପାରିବନି । ଶେଷକୁ ତମରି ପରି ଭଲ ଗଧଟାଏ ହେଇପାରିବ । ଆଉ କ'ଣ ହବ ?

ଯେ ଶଳା ମାଷ୍ଟର ଦଳକ ଯେମିତି, ଗାର୍ଡ଼ିଅନ୍‌ମାନେ ବି ସେମିତି । ଆଉ ଏ ନିଲଠା ସରକାର ମହା ଭଣ୍ଡୁଆ । ଶଳା ମନ୍ତ୍ରୀମଣ୍ଡଳ କିଛି ନାହିଁ । ସବୁ ଶଳେ ଗୋଟାଏ ଡଙ୍ଗାରେ ବସିଛନ୍ତି । ନିଜ ନିଜ ଭିତରେ ସଲାସୁତୁରା ହେଇ ଦେଶଟାକୁ ନଷ୍ଟ କରୁଛନ୍ତି । ସେଇମାନେ ବାହାରେ, ସଭାସମିତିରେ କହୁଛନ୍ତି, ଏଗୁଡ଼ାକ ନାସନା କାମ । ଏ ମାଷ୍ଟରମାନେ ବେପାରୀ । ପାଠ ପଢ଼ାପଢ଼ି ସବୁ ଗଲା । ଆଉ ନିଜେ ଟିଉସନ ମାଷ୍ଟର ଗୋଟେଇବାରେ ବ୍ୟସ୍ତ । ପାଞ୍ଚ ଜାଗାରେ ପଚିଶ ବି ଫିଙ୍ଗି ଦଉଛନ୍ତି । କଉ, ଏପଟସେପଟ ହଉଛ କାହିଁକି ? ଆଉ ତମେ ତା'ର ବିରୋଧ କଲେ ମଲ, ନ କଲେ ବି ମଲ । କ'ଣ କରିବ ଏବେ ?

ଘରେ ପ୍ରିୟତମା ପତ୍ନୀ କହିବେ—ଏମିତିଆ ଲୋକର ହାତଧରି ମଣିଷର ଜୀବନ ନଷ୍ଟ ହେଇଗଲା । ମଧ୍ୟଯୁଗୀୟ ଆଦର୍ଶକୁ ଧରି ରଖିଛନ୍ତି ।

ପୁଅଝିଅ କହିବେ—ଶଳା ବୁଢ଼ା ଏକଦମ୍ କାର୍ପଣ୍ୟ । ପଇସା ଛାଡ଼ୁନି । ଆମ ଜୀବନ ନଷ୍ଟ ହେଇଗଲା । ରଖିଥା ପଇସା । ଗୃହିଟିବ ।

ସମାଜ କହିବ—ଶଳା ମାଷ୍ଟର ଆଦର୍ଶ ଗ୍ରେଡେଇ ହଉଛି । କହୁଛି—ଟିଉସନ ଖରାପ । ଯୁଆଡ଼େ ନିଜ ପୁଅକୁ ପଠୋଉଛି । ବୁଢ଼ି ବୁଢ଼ି ପାଣି ପିଉଛି । ହେ ଶଳା, ତମେ ଯାହା କରୁଛ କର । ଘରେ ବାହାରେ, ଯୁଆଡ଼େ ହବ ଶଳା, ତମେ ମର, ବଞ୍ଚ ଯାହା କରୁଛ କର । ଏଠିକି ଆସିବ କାହିଁକି ? ଗରଗର ହବ କାହିଁକି ? ସମସ୍ତଙ୍କୁ ଅଶାନ୍ତିରେ କଲବଲ କରିବ କାହିଁକି ??

ତମ ଇଚ୍ଛା ଯାହା କରୁଚ କର । ମୁଁ ତ ମରିଗଲେ ଯିବି, ବଞ୍ଚିଥିଲେ ତମ-ମାନଙ୍କର ଢଙ୍ଗ ଦେଖିବି ରହିଥା ।

ବାପା ଏକା ନିଃଶ୍ୱାସକେ ଭାଷଣଟାଏ ମାରିଦେଲେ । ମୁଁ ବଲବଲ କରି ଚାହିଁଥାଏ । କିଛି ସମୟ ଗୁମ୍ ମାରି ବସିଲେ । ପୁଣି କହିଲେ—ଦେଖ, ମୁଁ ମୋ କଥା କହିଦେଉଛି । ଏ ଟୋକା ଟିଉସନ ଗଲେ ତମର ସବୁ ସମସ୍ୟା ଯଦି ସମାଧାନ ହେଇଯିବ ବୋଲି ଭାବୁଛ, ଯାଉ । ମୋର ଆପତ୍ତି ନାହିଁ । ତମେ ଯେମିତି, ପୁଅକୁ ସେମିତି ନ କରି ଛାଡ଼ିବ କାହିଁକି ? ତମେ ତ ଜୀବନ ସାରା ଟିଉସନ ହେଇଛ । କ'ଣ ହେଇଛ ଜାଣୁ ନ ଥିବ ? ମୁଣ୍ଡରେ ଖାଲି ଗୋବର । ବିଶୁଦ୍ଧ ମଣିଷ ଗୋବର । ପ୍ରଚୁର ଭିଟାମିନ୍ ।

ମା' ପୁଣି ଟିକେ ମୁହଁ ଫୁଲେଇ କହିଲ—ହଉ ବାପା, ମୋର ସବୁ ଦୋଷ । ତମେ ଭଲ ଲୋକ । ବ୍ରିଲିଆଣ୍ଟ । ମୋ ସାଙ୍ଗରେ ଏ ସକାଳଟାରୁ ଆଉ ଲଗାନା କହୁଛି । ମୁଣ୍ଡ ବିନ୍ଧିଲାଣି । ତମର ତ ପାଟିରେ ବାଡ଼ବତା ନାହିଁ ନା । ତମେ ଏଗୁଡ଼ା ପିଲାଟା ଆଗରେ କହୁଛ—ମା' ମୁଣ୍ଡରେ ମଣିଷ ଗୋବର । ତମ ପୁଅକୁ କ'ଣ ତମେ ଜାଣିନ ? ସବୁଆଡ଼େ ଯାଇ କହିବ—ବାପା କହିଲେ, ମା' ମୁଣ୍ଡରେ ମଣିଷ ଗୋବର । ମୋର ପୁଣି ଗୋଟାଏ ସମ୍ମାନ ଅଛି ନା । ବାହାରେ ଲୋକ ମୋତେ କ'ଣ ଭାବିବେ ?

କଉ, ଖାଲି କ'ଣ ତିମେ ଏକା ? ତମ ପରିବାରଟାଯାକ ତ ସେୟା । ବେଙ୍ଗା । ଯୁାଲ୍ଟ ସମସ୍ତେ କଲରାକସି ଛୁଣ୍ଡେଇଲାବାଲା । ପିତାଜୀ ହେଡ୍‌ମାଷ୍ଟର । ଉପରକୁ ଗଲାପରେ ସେ ଉହଁର ମସଲାଗୁଡ଼ାକ କୁଆଡ଼େ ଗଲା ? ଆଉ କୁଣ କଅଁଳାଲାନ ତ । ବୋଉ ମୋର ସବୁବେଳେ କହେ—ବର୍ଷା ପାଣି, କେନାଲ ପାଣି, ମା' ଦୁଧ ଟିଣ ଦୁଧ ଭିତରେ ତଫାତ୍ ଅଛି । ସବୁ ପାଣି, ସବୁ ଦୁଧ ସମାନ ନୁହଁ । ମୁଁ ବୋଉ ଦୁଧ ଖାଇ ବଢ଼ିଛି । ଟିଣ ଦୁଧ ନୁହେଁ । ତମେ ଏ କଥା ବୁଝିପାରିବନି । ତମ କଲଚରେ ନଆସି ।

ବାପାଙ୍କ ଗାଳି ଶୁଣି ମା' କାନ୍ଦିପକେଇଲା । କହିଲା—ହେଲା ବାବୁ ମୋର ସବୁ ଭୁଲ୍ । ଆମର ସବୁ ଖରାପ । ତମର ସବୁ ଭଲ । ମୁଁ କ'ଣ ମନା କଲି କି ? ମାଈପିଙ୍କ ପରି ଉଡ଼ୋଉଛ କ'ଣ ? ଶୂନ୍ୟଟାରେ ସକାଳୁ ସକାଳୁ ବର୍ଷୁଛ । କହିଦେଉଛି—ମୁଁ ଆଉ ପାରିବିନି । ତମ ପୁଅକୁ ନେଇ ତମେ ସମ୍ଭାଳ ।

ମା’ କଥା ଶୁଣି ବାପା ଚୁପ୍ ହୋଇଗଲେ । ମୁଁ କହିଲି—ବାପା, ଆମ ହେଡ୍ ସାଆରଙ୍କ ଝିଅ ଆମ ଶ୍ରେଣୀରେ ପଢ଼ୁଛି । ତା ନାଁ ଟା ଝୁନୁ । ସେ ମତେ କାଲି କହୁଥିଲା—“ମୁଁ ସ୍କଲରସିପ୍ ପାଇବି ।” ଗୋବିନ୍ଦ ସାଆରଙ୍କ ପୁଅ ଲୁନା ବି ଆମର ଶ୍ରେଣୀର ଛାତ୍ର । ସିଏ ବି ସ୍କଲରସିପ୍ ପାଇବ ବୋଲି କହୁଛି । କ୍ଲାସ୍‌ରେ ତ ତାକୁ ପାଠ ଆସୁନି । ପରୀକ୍ଷା ବି ହେଇନି । ସେମାନେ କେମିତି ଜାଣିଲେ ସ୍କଲରସିପ୍ ପାଇବେ ବୋଲି ? ଆମ ସାଆରେ ମତେ ଯାହା ପଚାରୁଛନ୍ତି ଚଟ୍ ଚଟ୍ ସବୁ କହିଦଉଛି । ତମେ କହିଲ ମୁଁ ପାଇବି କି ନାହିଁ ?

ବାପା ମତେ ବୁଝେଇଲା ପରି କହିଲେ—ଦେଖ୍, ସ୍କଲରସିପ୍ ପାଇବା ବଡ଼ କଥା ନୁହେଁ । ଭଲ ପଢ଼ିବା ହେଉଛି ବଡ଼ କଥା । ତୁ କ୍ଲାସ୍‌ରେ ସମସ୍ତଙ୍କଠାରୁ ଭଲ ପଢ଼ୁଛୁ କି ? କ’ଣ ଫାଷ୍ଟ୍ ହଉଛୁ ?

ମୁଁ ମୁଣ୍ଡ ହଲେଇ ହଁ କଲି ।

ଆଉ ସ୍କଲରସିପ୍ ନ ପାଇଲେ ସେଇଥି କ’ଣ ହେଲା ? ତୁ ତ ଭଲ ପିଲା ।

ହଁ ଘର ଭଲ କଥା କହୁଛ । ମୁଁ ଫାଷ୍ଟ୍ ହେଇକରି ପାଇବିନି । ସେମାନେ ଗଧଗଧୀ ହେଇକରି ପାଇବେ । ଜାଣିଛ ବାପା, ସମସ୍ତେ କହୁଛନ୍ତି—ତାଙ୍କ ବାପା ସବୁ ଖାତା ଦେଖିବେ ତ । ଅଧିକା ନମ୍ବର ଦେଇଦେବେ । ସେମାନେ ପାଇଲେ ମୁଁ କେମିତି ପାଇବି ଯେ ? ତମେ ତ ବଡ଼ ବଡ଼ ପିଲାଙ୍କୁ ପଢ଼ୋଉଛ । ମୋ ଖାତା ଦେଖି ମତେ ଫାଷ୍ଟ୍ କରେଇ-ଦଉନା । ତାଙ୍କ ବାପାମାନେ ତାଙ୍କ ପୁଅଝିଅଙ୍କ ପାଇଁ ସବୁ କାମ କରିବେ, ତମେ କିଛି କରିବନି । ସବୁବେଳେ ବସି ପଢ଼ିବ ।

ମୁଁ ଆଉରି କ’ଣ କହିବାକୁ ଯାଉଥିଲି । ବାପା କଥା ବଦଳେଇ କହିଲେ—ତୁ କହୁନୁ କେମିତି ପାଇବୁ ?

ସାଙ୍ଗେ ସାଙ୍ଗେ ମୋ ପାଟିରୁ ବାହାରିପଡ଼ିଲା—ଟିଉସନ ହେଲେ ଯାଇ ପାଇବି । ସାର୍ କହୁଛନ୍ତି ।

ବାପା ମତେ ଗାଧେଇଛି କି ନାହିଁ ପଚାରିଲେ । ମୁଁ ମୁଣ୍ଡଟୁଙ୍ଗାରି ହଁ କହିଲି । କଉଁଳେଇ କହିଲେ—ଯା ବାପା ସାର୍ଟପ୍ୟାଣ୍ଟ୍ ପିନ୍ଧ । ତତେ ସାର୍‌ଙ୍କ ପାଖରେ ଛାଡ଼ିଦେଇ ଆସିଲେ ଯୋଉ କଥା । ତମମାନଙ୍କ ସାଙ୍ଗରେ ଏତେ ବକ୍‌ବକ୍ ହେଇପାରିବନି । ଶଳା ଏଠିକି ଆସିବ କାହିଁକି, ସମସ୍ତଙ୍କ

ଆଗରେ କଣ୍ଟା ହବ କାହିଁକି ? ତମ ଇଚ୍ଛା ଯାହା କରୁଛ କର । କାମ ସବୁ ଠିକ୍‌ଠାକ୍ କରିସାରି ମତେ ପଗ୍ଭରିବ—ଏଇଟା କଲେ କେମିତି ହ'ନ୍ତା, ସେଇଟା କଲେ କେମିତି ହ'ନ୍ତା । ମୁଁ ହଁ କହିଲେ, ନାଇଁ କହିଲେ ମଲି । ଶଳା ଗୁରୁ ସବୁ । ସମସ୍ତେ ସମାନ । ମରି ଯ୍ଭାନ୍ତୁ ।

ବାପାଙ୍କ ଢଙ୍ଗ ଦେଖି ମତେ ଡରମାଡ଼ିଲା । ଉଠିଲିନି ।

ସେ ହଠାତ୍ ଠାଏକନା ଚ୍ଛପୁଡ଼ାଏ ମାଇଲେ ମୋ ଗାଲରେ । କହିଲେ—ତତେ ପରା କହିଲି ଜାମାପ୍ୟାଣ୍ଟ ପିନ୍ଧ । ଶୁଭୁନି, କାଲା, ଯା ? ଉଠ ।

ମା' ରୋଷେଇଘରୁ କହିଲା—ନା, ସେ ଟିଉସନଫିଉସନ ହବନି । ମୁଁ ତାକୁ ଦେଖିବି । ତମ କାମ ତମେ କର ।

ବାପା ଆହୁରି ବଡ଼ପାଟିରେ କହିଲେ—ଦେଖିବାର ଥିଲା ତ, ସକାଳୁ ସକାଳୁ ଏ ପାଲ୍ ଭିଆଇଛ କ'ଣ ପାଇଁ । ଯ୍ୟୁ ଟୋକା, ଯା ଉଠ। ବ୍ୟାଗ୍ ଧ । ଉଠୁଚୁନା ନାଇଁ ?

ମା' ଆଉରି ଜୋର ଦେଇ କହିଲା—ମୋ କଥା ତମକୁ ଶୁଭୁନି ନା କ'ଣ ? ବାପା ଆଉ ବଡ଼ ପାଟି ନ କରି ଆସ୍ତେ ଆସ୍ତେ କହିଲେ—ଦେଖ, ସେ ଯଦି ନ ଯିବ, ଏଇ ଜାମା ପ୍ୟାଣ୍ଟ୍ ପିନ୍ଧି ମୁଁ ମୋ ବାଟରେ ଗ୍ଭଲିଲି । ତମକୁ ମୁଁ ପୋଷ୍ଟୁନି ଯେ, ତମରି ଅଚଳ ହେଇଯିବ । ମୁଁ ନଲଠା ନୁହଁ, ଦାନ୍ତ ଦେଖେଇ ବଞ୍ଚିଥିବି । ମୋର ଗୋଟାଏ ବାପା । ତା'ପରେ ମତେ କହିଲେ—ଯ୍ୟୁ ଟୋକା ତୁ ଯିବୁନି ତା'ହେଲେ । ଠିକ୍ ଅଛି । ମୁଁ ବାହାରେ ଠିଆ ହେଇଛି । ତୋର ଇଚ୍ଛା ହେଲେ ଆ, ନଇଲେ ନାହିଁ ।

ବାପା ଗ୍ଭଗିଗଲେ, ଆମେ କେହି ଭରସି ତାଙ୍କ ମୁହଁକୁ ଗ୍ଭହିଁପାରୁନା । ମା' ତା'ର ଲୁଚେଇ ଲୁଚେଇ କାନ୍ଦେ । ମୋର କୁଆଡ଼େ ପଳେଇଯିବାକୁ ଇଚ୍ଛା ହୁଏ । ବୋଉ ଥିଲେ ବି କିଛି କହିପାରେନି । ମନମାରି ବସିଥାଏ । ତାଙ୍କଭଳିଆ ଗ୍ଭଗୀ ନା ଦୁନିଆରେ ନାହାନ୍ତି । ଛି ।

ବୋଉ କହେ—ଏତେ ଗ୍ଭଗିବାଟା ଭଲ ନୁହେଁ । ନଜର କ୍ଷତ ।

ବାପା ବଡ଼ ପିଲା ହେଇ କେମିତି ବୁଝିପାରୁ ନାହାନ୍ତି କେଜାଣି ?

ମୋର ତାଙ୍କ ଉପରେ ଗ୍ଭଗ ହୁଏ । କିଛି କହିପାରେନା ।

## ॥ ନଅ ॥

ବାପା ବେଳେବେଳେ ମଜା ମଜା କଥା ପଚାରନ୍ତି । ଆଜି ସନ୍ଧ୍ୟା-ବେଳେ ପଢ଼ିବାକୁ ବସୁ ବସୁ ପଚାରିଦେଲେ—ତୁ ବଡ଼ ହେଲେ କ'ଣ ହବୁ କହିଲୁ ଦେଖି ।

ହଠାତ୍ କ'ଣ କହିବି ମୁଁ କିଛି ଭାବିପାରିଲିନି । ଚୁପ୍ ହୋଇ ବସି ରହିଲି । ପଢ଼ା ଆରମ୍ଭ କରିବାକୁ ବି ଇଚ୍ଛା ହେଲାନି ।

ସେ ପୁଣି ପଚାରିଲେ—ଆରେ, ତତେ କ'ଣ ପଚାରୁଚି ପରା । ବସି ରହିଲୁ କାହିଁକି ? ତୁ ସାଙ୍ଗେ ସାଙ୍ଗେ ଉତ୍ତର ଦବୁନା । ଆମେ ଜାଣିବା! ଆମ ପୁଅ ଅମୁକ ହେବାପାଇଁ ଚାହୁଁଚି । ଏ କ'ଣ କସ କଥା କି ?

ମୁଁ ଚଟ୍‌କିନା ଉତ୍ତର ଦେଲି—କିଛି ହେବିନି ।

ସେ ହସି ହସି କହିଲେ—ଆରେ ସେ କେମିତି କଥା ? ତୁ କିଛି ହବୁନି କେମିତି ? କ'ଣ ଗୋଟାଏ ତତେ ହବାକୁ ପଡ଼ିବ । ତୁ ଏଇ ବର୍ଷେ ଦୁଇବର୍ଷ ତଳେ କ'ଣ କରିବୁ ବୋଲି କହୁଥିଲୁ, ମନେଅଛି ନା ନାହିଁ, ଆଁ ? ସେ କାମ କରିବା କ'ଣ କମ୍ କଥା କି ?

ତାଙ୍କ କଥା ଶୁଣି ମୁଁ ହସିଲି । ମତେ ଚାହିଁ ସେ ବି ହସିଲେ । ମା' କହିଲେ—କଓ ବାବୁ ସେଇ କଥାଟା ହେଲେ କହିଦଉନି । ବାପା ଆଉ ପଚାରିବାକୁ ସାହସ କରିବେନି । କହ ।

ବାପା ସେତେବେଳେ ମତେ ଭାରି ବାଡ଼ୋଉଥିଲେ । ମୁଁ ବି ସେମିତି ଚଗଲା ହଉଥିଲି । ବାପା ମତେ ମାରିଲେ ମାଗୁଫାଦର ଜମାରୁ ସହିପାରନ୍ତିନି । ମତେ କୋଳ କରନ୍ତି । ବାପାଙ୍କୁ ଗାଳିଦେଇ କହନ୍ତି—ଅଜା ପିଲାଙ୍କୁ ବାଡ଼େଇଲେ ସେମାନେ କ'ଣ ସଜାଡ଼ି ହୋଇଯିବେ ବୋଲି ଭାବୁଛ ? ସେଇଟା ଭୁଲ୍ କଥା । ଏଇଟା ସେମାନଙ୍କର ଖେଳିବା ସମୟ । ଧୋଉ ବୟସରେ ମଣିଷ ଯାହା କରିବା କଥା ସେମାନେ କରିବେ । ତମେ ଚାହିଁଲେ କ'ଣ ସେମାନଙ୍କ ପରି ଖେଳିପାରିବ ? ଏଇ ସାଧାରଣ କଥାଟା ନ ବୁଝି, ତାକୁ ବାଡ଼ୋଉଛ । ତମ ପ୍ରତି ତା ଭିତରେ ଗୋଟାଏ ଭୟ ଆଉ ଘୃଣାଭାବ ସୃଷ୍ଟି ହବନି । ତମ ହାଲଙ୍କୁ ଏତେଶୀଘ୍ର ବାପାମା ହବାପାଇଁ କିଏ କହିଲା ? ସେ ବୟସ ତମର ହୋଇଥିଲା ପରି ଲାଗୁନି । ସବୁ କାମରେ ହମ ହାମ ହେଲେ

ନାହିଁ ଚଳେ । ପିଲାଟାକୁ ଗାଈଗୋରୁଙ୍କ ପରି ଛାଡ଼ିଛନ୍ତି । ଦେଖିବ, ଆଉ କେଇଦିନ ପରେ ଏ ଛୋଟ୍ଟ କାମ କରିବନି । ବଡ଼ ହେଲେ ସେ ତମକୁ ବାଡ଼େଇବ । ସେତେବେଳେ ତମେ ତା ପୁଅଝିଅ ହେଇଯାଇଥିବ । ସେ କ'ଣ ତମକୁ ଛାଡ଼ିଦବ ?

ତା'ପରେ ସେ ମଜା କଥାଟାଏ ଶିଖେଇଦେଲେ । ମତେ ଅବଶ୍ୟ ସେ କଥା କହିବାକୁ ଭଲ ଲାଗେନା । ମାତ୍ର ବାପାମା'ଙ୍କ ଉପରେ ରାଗିଥିଲା-ବେଳେ ସମୟେ ସମୟେ ପାଟିରୁ ବାହାରିପଡ଼େ । ଫାଦର ମତେ ଯେମିତି ପଚାରିବେ—ଲିଟ୍ଲ୍, ବଡ଼ ହେଲେ କ'ଣ କରିବୁ ?

ସଙ୍ଗେ ସଙ୍ଗେ ମୁଁ ଉତ୍ତର ଦିଏ—ବାପାମା'ଙ୍କୁ ବାଡ଼େଇବି ।

ଦେଖ୍, ଏଠି ମା' ଆଉ ମୁଁ ଅଛୁ । ଟୁଲୁ ତ ଶୋଇପଡ଼ିଛି । ଆଉ କିଏ ଅଛି ଶୁଣିବ ଯେ ଲାଜ ମାଡ଼ୁଛି ? ମୁଁ କାହା ଆଗରେ କହିନବି । ସତକଥା କହ ।

ମୁଁ ଡରି ଡରି କହିଲି—ଇଞ୍ଜିନିୟର ହେଲେନା ବହୁତ ଟଙ୍କା ରୋଜଗାର କରିବି ।

କରେ ଟଙ୍କା ରୋଜଗାର କରିବୁ ବୋଲି ଇଞ୍ଜିନିୟର ହେବୁ । ତୋର ଟଙ୍କା କ'ଣ ହବ ?

ତମେ ଜାଣିପାରୁନ କି ? ବେଶୀ ଟଙ୍କା ହେଲେ ଗାଡ଼ି, ଫ୍ରିଜ୍, କଲର ଟି.ଭି., ଗ୍ରାଇଣ୍ଡର, ଭି.ସି.ଆର. ଆଉରି କେତେ କେତେ ଜିନିଷ କିଣିବା । ବଡ଼ ଘର କରିବା । ଗାଡ଼ିରେ ବୁଲାବୁଲି କରିବା ।

କ'ଣ ଜମାରୁ ଏତିକି ? ଆଉ କିଛି କରିବୁନି ? ମା'କୁ କହିଲେ—ଦେଖ ତମ ପୁଅର କେତେ ବୁଦ୍ଧି । ବାପାର ଅଭାବ, ଦୁଃଖ ଦେଖି ଏବେଠାରୁ ସେ ଚିନ୍ତା କଲାଣି । ଯେ କ'ଣ କମ୍ ବଡ଼ କଥା ?

ତାଙ୍କ କଥା ଶୁଣି ଭାବିଲି—ମୋ କଥା ଶୁଣି ସେ ବୋଧହୁଏ ଭାରି ଖୁସୀ ହଉଛନ୍ତି । ଅଧିକ ଉତ୍ସାହରେ କହିଲି—ତମେ କ'ଣ କିଛି ଦେଖିପାରୁନ କି ବାପା, ଆମ ଘର ଆଗରେ ସେ କଲୋନିରେ ଯୋଉ ଇଞ୍ଜିନିୟରମଉସା-ମାନେ ରହୁଛନ୍ତି, ପାଲମଉସା, ମହାନ୍ତିମଉସା, ମହନ୍ତ ମଉସା, ଦାସମଉସା, ତାଙ୍କ ଘରେ ସବୁ କେତେ ଜିନିଷ । ଗୋଡ଼ ବୁଲୁନି ପରା । ସମସ୍ତଙ୍କର ତ ସ୍କୁଟର, କଲର୍ ଟି.ଭି. । ପାଲମଉସାଘର ଗୋଟାଏ କାର୍ ଆଣିବେ ଏ

ମାସରେ । ତମେ ତ ପାଖରେ ଥାଇ କାହାର ଘରକୁ ଯିବନ, ଦେଖିବ କେମିତି ? ମାଉସୀମାନେ କେତେ ସୁନାଗହଣା ପିନ୍ଧିଛନ୍ତି । ତାଙ୍କ ଆଲମିରା ଘରସାରା ଖାଲି ଶାଢ଼ି ବାପା । ମା'ର କିଛି ନାହିଁ ଦେଖୁନ । ବେକରେ ଗୋଟାଏ ନାଲି ମାଳି, ସରୁଆ ସୁନା ଚେନ୍ । ହାତରେ ନାଲି କାଚ । ଜମାରୁ ଚାରିପାଞ୍ଚ ଖଣ୍ଡ ଲୁଗା । ମା'ଆଟା ସୁଉଦୁ ହୁଣ୍ଡୀ । ମାଉସୀମାନଙ୍କ ଲୁଗାପଟା, ବେଶପୋଷ କ'ଣ ଦେଖିପାରୁନ । ଛି, ସ୍ନୋ ଟିକେ ବ ଘରେ ନାହିଁ । ସେମାନଙ୍କ ଘରେ କେତେ ଜିନିଷ ।

ବାପା ମତେ ଖୁସୀ କରିବାପାଇଁ ପୁଣି କହିଲେ—ଖାଲି କ'ଣ ସେତିକି କି ବାପା, ତାଙ୍କ ଘରେ କେତେ ଚାକରବାକର ସବୁବେଳେ କ'ଣ କରୁଛନ୍ତି । ବଜାର ସଉଦା କରୁଛନ୍ତି । ରୋଷେଇ କରୁଛନ୍ତି । କୁନ୍‌ମୁନ, ମାମିନା ତୋର ସାଙ୍ଗମାନଙ୍କୁ ସ୍କୁଲକୁ ନେଉଛନ୍ତି । ବଗିଚାରେ ଗଛପଛ ଲଗାଉଛନ୍ତି । ପାଣି ଦେଉଛନ୍ତି । ମାଉସୀ, ମଉସାଙ୍କର ଲୁଗାପଟା ବ କାଚୁଛନ୍ତି । ସମସ୍ତେ କେତେ ବଡ଼ିଆ ବଡ଼ିଆ ଗାଈ ରଖିଛନ୍ତି । ଦୁଧ, ଦହି, ଘିଅ ସବୁବେଳେ । କୁନ୍‌ମୁନ, ଝିଲି, ମିଲି, ବାବୁନ୍ ଏମାନେ କେତେ ବଡ଼ିଆ ସାର୍ଟ, ପ୍ୟାଣ୍ଟ ପିନ୍ଧି ବୁଲୁଛନ୍ତି । କେତେ ବେଶ ହଉଛନ୍ତି । କେତେ ଚକୋଲେଟ୍, ମିକ୍‌ଶ୍ଚର, ମିଠା ଖାଉଛନ୍ତି ? ତୁ ଯେତେବେଳେ ଆଉ ଟିକେ ଛୋଟ ଥିଲୁ, ସବୁଦିନେ ପରା ମତେ କହୁଥିଲୁ ବାପା, ସେମାନଙ୍କର ଏତେ ଜିନିଷ, ଆମର କିଛି ନାହିଁ । କି ଯେ ବାପା । ମନେଅଛି ନା ? ଆଚ୍ଛା ବାପା, ତୁ ଏତେ ଟଙ୍କା ଆଣିକରି କ'ଣ କରିବୁ ?

ତମେ କ'ଣ ବୁଝିପାରୁନ ? କହିଲି ପରା, ସେମାନଙ୍କର ଯାହା ଅଛି, ଆମେ ସେଗୁଡ଼ାକ ସବୁ କିଣିବା ।

ଆଚ୍ଛା ବାପା, ଆମର ଏସବୁ ନାହିଁ ବୋଲି ତୋର କ'ଣ ଅସୁବିଧା ହେଉଛି ?

ହଉନ ଆଉ କ'ଣ ? ତମେ କିଛି ଜାଣିପାରୁନ । ମୋର ସାଙ୍ଗମାନେ ମତେ ସବୁବେଳେ ଖାଲି ପଚାରୁଛନ୍ତି—କିଟ୍ଟୁରେ, ତମର ସ୍କୁଟର କିଣୁନ । କଲର୍ ଟି.ଭି.ଟାଏ ଆଣୁନ । ଆମର କେତେ ଜିନିଷ ଅଛି । ତମର କିଛି ନାହିଁ । ମିତାଲିର ବାପାବୋଉ କଥା ହଉଥିଲେ—ସାଲେପୁର, କଟକ ଯାଇ ସୁନାହାର, ଲୁଗା, ଜାମାପ୍ୟାଣ୍ଟ ଆଣିବେ । ଏ ଖମାର ବଜାରରେ ଭଲ

ଜିନିଷ ମିଳୁନି । ମତେ ସବୁଦିନେ ମିଠା ଆଉ ବଢ଼ିଆ ବଢ଼ିଆ ଚକୋଲେଟ୍ ଦେଉଛନ୍ତି । ମାଉସୀମାନେ ବି ବେଳେବେଳେ ପଠୁଚ୍ଛନ୍ତି । ମା'ଙ୍କୁ ସେମାନଙ୍କ ପାଖରେ ଦେଖିଲେନା, ମତେ ଏକଦମ୍ ଖରାପ ଲାଗୁଛି । ସେମାନେ ସବୁବେଳେ ଫିଟ୍‌ଫାଟ୍ , ଆଉ ଏଇଟା ସୁଉଦୁ ନାସେଣୀ । କିଛି ନାହିଁ । ମାଲେ ସେ ଟିକିନବୋଉ ମାଉସୀ କ'ଣ କହୁଥିଲି ଜାଣିଚୁନା, କହୁଥିଲି—"ଦାଶ-ବାବୁଙ୍କ ଘର ଭାରି କାର୍ପି । ଘରଟା ଭିତରେ କିଛି ଜିନିଷ ନାହିଁ । କେମିତି ଚଳୁଛନ୍ତି କେଜାଣି ? ଦିଇଜଣ ରୋଜଗାରି । ଏତେ ଟଙ୍କା ପାଉଛନ୍ତି । ସବୁ ବ୍ୟାଙ୍କ୍‌ରେ ଥୋଇ ଦେଉଛନ୍ତି । ପଇସା କ'ଣ ସ୍ୱର୍ଗକୁ ନେବ ? ରୋଜଗାର କରୁଛ, ଖରଚ କରି ସୁଖରେ ରହିବ ନା ଖାଲି ପାସ୍‌ବହି ଦେଖୁଥିବ ? ସେଥିରେ କ'ଣ ପେଟ ପୂରେ । ମୁଁ ଦିନେ ସ୍କୁଲରୁ ଫେରୁଥିଲିବେଳେନା ସେ ମହାନ୍ତି, ଦାଶମାଉସୀ ଆଗରେ କହୁଥିଲେ । ମୁଁ ଶୁଣିଦେଲି । କାନ୍ଦ ଲାଗିଲା । ଆମକୁ ତ ପଛରେ ସମସ୍ତେ କେତେ କଥା କହୁଥିବେ ? ଇଞ୍ଜିନିୟର ହେଲେ ବହୁତ ଟଙ୍କା ହେବ । ଟଙ୍କା ହେଲେ ସବୁ କିଣିଦେବା । ଏ ଲେକ୍‌ଚରର ଚାକିରି ଜମାରୁ କରିବନି । ଯେ ଚାକିରି କରିବ କାହିଁକି, ଏମିତି ରହିବ କାହିଁକି ?"

ମନେ ମନେ ବାପାଙ୍କ ଉପରେ ଭାରି ବିରକ୍ତ ହେଲି । ତାଙ୍କୁ ଦେଖିଲେ ବେଳେବେଳେ ଭାରି ଖରାପ ଲାଗେ । ସବୁବେଳେ ଖାଲି ପଢ଼ୁଥିବେ ଆଉ ଲେଖୁଥିବେ । ପିଲାମାନେ ଆସିଲେ ପାଠ ବୁଝେଇଦେବେ । ତାଙ୍କ ସାଙ୍ଗମାନଙ୍କ ସାଙ୍ଗରେ କ'ଣ ଯ୍ୟାଉଁସ୍ୟାଉଁ ଗପ କରିବେ । ସେଇ ପାଠ କଥା । ପଢ଼ିବାପାଇଁ ସେମାନଙ୍କୁ ବହି ଦେବେ । ମଝିରେ ମଝିରେ ମା'ଙ୍କୁ କହୁଥିବେ— ଜଳଖିଆ ଆଣ, ଚା' ଆଣ । ଅମକ ଆଣ ତମକ ଆଣ । ସେ ଅମକ ବହିଟା ଏଠୁ କିଏ ନେଲା ? ଆମର ଏ ବହିଟା ଥିଲା ତ । ତମେ କାହାକୁ ଦେଇଛ କି ? ନିଜେ କାହାକୁ ଦେଇଥିବେ ମନେ ନ ଥିବ । ଦରକାରବେଳେ ନ ପାଇଲେ ମା' ଉପରେ ଗାଳି । ପଢ଼ି ପଢ଼ି ଲେଖି ଲେଖି ଆଖି ତ ପୂରା ଖରାପ । ଏଡ଼େ ମୋଟା କାଚର ଚଷମା ଲଗେଇଛନ୍ତି । ସେ ଚଷମା କ'ଣ ଆଉ କିଏ ପିନ୍ଧିପାରିବେ କି ? ଗାଧେଇଲା, ଶୋଇଲାବେଳେ ବି ଚଷମା । ବୁଢ଼ାହେଲେ ପାନେ ପାଇବେ ଯେ ? ଏଣେ ଘରକୁ ପୁଣି ସବୁବେଳେ ବୁଢ଼ା ପାପରା ଲୋକଙ୍କୁ ଡାକିଆଣିବେ । ତାଙ୍କ କଥା ଶୁଣିବେ । କ'ଣ ଯ୍ୟାଉଁସ୍ୟାଉଁ ପଚାରିବେ । ଡାଇରିରେ ଟିପି ପକାଉଥିବେ । ରେକର୍ଡ଼ିଂ

କରୁଥିବେ । ଝେପ୍‌ରେ ଖାଲି ସେଇ ବୁଢ଼ାବୁଢ଼ୀଙ୍କ କଥା । ଗୀତକୁ ଭଲ ପାଆନ୍ତି ଯେ । ମାତ୍ର ଗୀତଗୁଡ଼ାକରେ ଖାଲି ଆଁ ଆଁ, ଉଁ ଉଁ, କେଁ କେଁ । ଆମ୍ବବାଳି, ପକୁଡ଼ବାଳି, ଯିସ୍‌କ ଝବ ମୋଝୀ, ତେଗ ମେଗ ପ୍ୟାର୍, ଝୋଙ୍କା କେମିତି ହଉଛିରେ, ଦେଏଖ୍ ତାକୁ, ସମୁଦ୍ରୁଣୀ, ମେରେ ପ୍ୟାର୍ ଗୀତ ଫିତ କିଛି ନାହିଁ । ସେ ଝେପ୍‌ଟାକୁ କାଇଁକି ରଖିଛନ୍ତି କେଜାଣି ? ମା'ଟା ବି ସେମିତି । ସେ ଟିକେ ବାପାଙ୍କ ସାଙ୍ଗରେ ସଜବାଜ ହୋଇ ବୁଲି ଯା'ନ୍ତାନି ? ଆମକୁ ପଠାନ୍ତାନି ? ବାପା ପାଖରେ ଥିଲେ ଖାଲି ନାଚୁଥିବ । ବାପା ନ ଥିଲେ ପଢ଼ିବ, କଲେଜ ଯିବ, ଶୋଇବ, ଲିଝୁରେ ଲିଝୁରେ ହଉଥିବ । କ'ଣ ପାଉଛନ୍ତି ସେଥିରୁ କେଜାଣି ?

ମୁଁ ନୀରବ ରହିବା ଦେଖି ବାପା ପୁଣି ପଚାରିଲେ—ଏ ଲେକ୍‌ଚର ଗୃକର କାଇଁକି କରବୁନି ବାପା ? କ'ଣ ହେଲାକି ?

ଇଏ କି ଗୃକର ? ଖାଲି ବହି କିଣ, ପଢ଼, ପାଠି କର । ଆଉ କ'ଣ କିଛି କଥା ନାହିଁ ?

ଏଥର ମତେ ସେ ବୁଝେଇଲା ପରି କହିଲେ—ଦେଖ୍ ବାପା, ଆମ ଘରେ କେତେ ବହି । ଆଲମିରା, ର୍ୟାକ୍, ସୋକେସ୍, ଟ୍ରଙ୍କ୍ ସବୁଆଡ଼େ । ରଖିବାକୁ ଜାଗା ନାହିଁ । କେତେ ଲୋକ ଆସୁଛନ୍ତି । ରହୁଛନ୍ତି, ଆମମାନଙ୍କୁ କେତେ ଭଲ ପାଉଛନ୍ତି । ତମକୁ ଗେଲ କରୁଛନ୍ତି, କାଖୋଉଛନ୍ତି । ବୁଢ଼ାଟିଏ ହୋଇଥା' ବୋଲି କହୁଛନ୍ତି । କେତେ ଖୁସୀ ହଉଛନ୍ତି । ତତେ କ'ଣ ଏସବୁ ଭଲଲାଗୁନି ?

ହଁ ଲାଗୁଛି ଯେ ।

ଆଉ ଯେ ପୁଣି କ'ଣ ? ସେମାନଙ୍କ ଘରକୁ କିଏ ସବୁ ଆସୁଛନ୍ତି କହ ? ଦେଖିଚୁନା ନାହିଁ ?

ମୁଁ କିଛି ନ କହି ନୀରବ ରହିଲି ।

ସେ ପୁଣି କହିଲେ—ତୁ ଜାଣିନୁ ବାପା, ସେମାନେ ଯେତିକି ଦରମା ପାଉନାହାନ୍ତି, ମୁଁ ତା'ଠାରୁ ବହୁତ ବେଶୀ ପାଉଛି ।

ବେଶୀ ପାଉଛ ତ ଟଙ୍କା ସବୁ କ'ଣ କରୁଚ ? ଆମର ତ କିଛି ନାହିଁ । ସେମାନଙ୍କର ତ କେତେ ଜିନଷ । ମାଆର ଆଉ ତମର ପଇସାଗୁଡ଼ାକ କ'ଣ

ହଜେଇଦଉଚ ? ତମେ ତ ସବୁକଥା ଭୁଲିଯାଅ । ପକେଟରୁ କୋଉଠି ଗଳି ପଡ଼ିଥିବ ?

ବାପା ହସିଲେ । କହିଲେ—ତୁ ଏବେ ବୁଝିପାରିବୁନି । ବଡ଼ ହ', ସବୁକଥା ଜାଣିବୁ । ଏବେ ଦରକାର ନାହିଁ ।

ତମେତ ବୁଝେଇପାରୁନ । ଆଉ କ'ଣ ଯେ ?

ତୁ କ'ଣ ବୁଝିପାରୁନୁ କହ ?

ମୁଁ ସ୍ୱର ଲମ୍ବେଇ କହିଲି—ଦେଖ, ତମେ ଚାକିରି କରିଛ । ସେମାନେ ଚାକିରି କରିଛନ୍ତି । ତମେ କଲେଜ ଯାଉଛ, ସେମାନେ ଅଫିସ୍ ଯାଉଛନ୍ତି । ତମେ ତ ନିଜେ କହୁଛ, ତମେ ସେମାନଙ୍କଠାରୁ ବେଶୀ ଟଙ୍କା ପାଉଛ ବୋଲି । ତା'ହେଲେ ସେମାନଙ୍କ ଘରେ ଯେତେବେଳେ ଏତେ ଜିନିଷ, ଆମ ଘରେ କିଛି ନାହିଁ କାହିଁକି ?

ମୋ କଥା ଶୁଣି ବାପାଙ୍କ ବୁଦ୍ଧି ହଜିଗଲା । ବହି ଥୋଇଦେଇ ସୋଫାକୁ ଆଉଜି ବସିପଡ଼ିଲେ । ମୁହଁଟା କେମିତି କେମିତି ଦିଶିଲା । ମୋ କଥା ତାଙ୍କୁ କାଟିଲା ବୋଧହୁଏ । ମା'କୁ ଚା' କରିବାକୁ କହିଲେ ।

ମତେ କହିଲେ—ଆଚ୍ଛା ସେ କଥା ଥାଉ ବାପା । ଯାହା ପଚାରିବି କହିବୁ । ଦେଖ୍, ତମ ସ୍କୁଲରେ ବହୁତ ପିଲା ପଢ଼ୁଛନ୍ତି । ସବୁ ପିଲାଙ୍କର କ'ଣ ଭଲ ଭଲ ଜାମା, ପ୍ୟାଣ୍ଟ୍, ଯୋତା, ଛତା, ଗାଡ଼ି, ଘଡ଼ି ଅଛି ? ତୋର ଅନେକ ସାଙ୍ଗ ଖାଲି ପାଦରେ, ଛିଣ୍ଡା ଜାମାପ୍ୟାଣ୍ଟ୍ ପିନ୍ଧି ଆସୁ ନାହାନ୍ତି । ଅନେକଙ୍କର ତ ସବୁ ବହି ନ ଥିବ । ଅନେକ ତ କାଗଜ, ଖାତା, କଲମ କିଣିବାକୁ ପଇସା ପାଉ ନ ଥିବେ ?

ମୁଁ ହଁ କହିଲି ।

ଖାଲି ସେତିକି ନୁହେଁ । ତୁ ଜାଣିନୁ, ଅନେକ ଦୁଇଓଳି ଖାଇବାକୁ ପା'ନ୍ତିନି । ସେମାନେ ଏତେ ଗରିବ ଯେ, ବିଶ୍ୱାସ କରିପାରିବୁନି । ସେମାନଙ୍କର ଯାହା ନାହିଁ, ତୋର ସେସବୁ ଅଛିନା । ସେମାନେ କ'ଣ ମଣିଷ ନୁହନ୍ତି ? କ'ଣ ବାପାମା' ନାହାନ୍ତି ? ସେମାନେ କ'ଣ ଭଲ ଖିବୁ ନାହାନ୍ତି ? ତୁ କ'ଣ ସେମାନଙ୍କ ସାଙ୍ଗ ହଉନୁ ? ସେମାନଙ୍କ ସାଙ୍ଗରେ ଖେଳୁନୁ ? ତୁ ସେମାନଙ୍କ ବାପାବୋଉଙ୍କୁ ଚିହ୍ନିଛୁ, ଦେଖିଛୁ ?

ମୁଁ ମୁଣ୍ଡହଲେଇ ମନାକଲି ।

ସେ କହିଲେ—ହଁ, ତୁ ସେମାନଙ୍କୁ ଦେଖିଛୁ । ମାତ୍ର ଚହ୍ନିନୁ । ତୁ ଦେଖିଚୁ ନା ସ୍ତ୍ରୀଲୋକମାନେ ଇଟା, ଗୋଡ଼ି, ସିମେଣ୍ଟ ମୁଣ୍ଡେଇ କାନ୍ଥ ଉପରକୁ ଉଠୁଥା'ନ୍ତି । ଖରାବେଳେ ରାସ୍ତା ଉପରେ ପିଚୁ ଢାଳୁଥାନ୍ତି । ମାଟି ବୋହୁଥାନ୍ତି । ଧାନ ବାଛୁଥାନ୍ତି, କାଟୁଥାନ୍ତି, ବାଡ଼େଉଥାନ୍ତି । ମାଟି ହାଣୁଥାନ୍ତି । ଧୂଳି, ମାଟି ପଙ୍କ, କଳା ସାଲୁବାଲୁ ସେମାନଙ୍କର ଦେହ । ସେମାନେ ସମସ୍ତେ ତୋ ଉଷାମା, ମା', ମାଉସୀମାନଙ୍କ ଭଳି ନା ? ଆଉ ବି ଦେଖିଚୁ ତ—ମୋ ପରି ଲୋକମାନେ ଖରା, ବର୍ଷା, ଶୀତରେ କେତେ କାମ କରୁଥାନ୍ତି । ଦେହରୁ ଝାଳ ନିଗିଡ଼ି ପଡ଼ୁଥାଏ । ଶଗଡ଼ ବାହିଲାବେଳେ, ପିଚୁ ଆଉଟିଲାବେଳେ, ମାଟି, ଇଟା ବୋହିଲାବେଳେ କେମିତି ଗୀତ ବୋଲୁଥାନ୍ତି, ହସଖୁସିରେ ଫାଟି ପଡ଼ୁଥାନ୍ତି । ତାଙ୍କ କୁନି କୁନି ପିଲାମାନେ ବେଳେବେଳେ ଲୁଗାରେ ବନ୍ଧାହୋଇ ଗଛରେ ଝୁଲୁଥାନ୍ତି । ଆଉ ଯୋଉ ଲୋକ ସେମାନଙ୍କୁ କାମ କରଉଥାଏ ଓ ଜଗିଥାଏ, ଟିକିଏ ବସିପଡ଼ିଲେ ପାଟି କରେନା । ଏବେ ତୁ କହ—ଆନନ୍ଦରେ ନ ଥିଲେ ସେମାନଙ୍କ ପାଟିରୁ କ'ଣ ଗୀତ ବାହାରନ୍ତା ? ଶୀତର ତାଳେ ତାଳେ ପାଦ କ'ଣ ନାଚନ୍ତା ? ଆନନ୍ଦ ମନରେ ଥିଲେ ସିନା ମଣିଷ ନାଚେ, ଗାଏ, ହସେ, ହସାଏ । ସେମାନଙ୍କର ଗାଡ଼ି, ଟି.ଭି., ସୁନା-ଗହଣା, ଚାକରବାକର ଅଛି କି ? କିଛି ନାହିଁ । ଅଛି ଛିଣ୍ଡା ଲୁଗା, ଛିଣ୍ଡା କନ୍ଥା, ନୁଆଣିଆ ଭଙ୍ଗାଘର, ଗଛମୂଳ । ତୁ ସେମାନଙ୍କ କଥା କହୁନୁ ତ ? ସେମାନେ କ'ଣ ମଣିଷ ନୁହନ୍ତି ?

ମୁଁ କ'ଣ ମନାକଲି କି ?

ସେମାନେ ତତେ ଭଲପାଆନ୍ତି ନା ?

ହଁ, ଭଲପାଆନ୍ତି ।

ତୁ ସେମିତିକା ସାଙ୍ଗମାନଙ୍କ ସହିତ ଖେଳୁନା ?

ହଁ ଖେଳେ । ସେମାନଙ୍କ ପାଖରୁ କୋଳି, ଖଟା ଖାଏ ।

ସବୁ ତ ହଁ । ତେବେ ଇଞ୍ଜିନିୟର ହେବାକୁ ମନ କ'ଣ ପାଇଁ ? ଟଙ୍କା ରୋଜଗାର କରି କ'ଣ କରିବୁ । ତୁ ପିଲାଲୋକ, କିଛି ବୁଝିପାରିବୁନି ବାପା ।

ବାପାଙ୍କ ଉପରେ ମୋର ରାଗ ହେଲା । କ'ଣ ପଚାରିଲେ, ଏମିତି ମଜାରେ ବୁଝେଇଦେବେ ଯେ, ଆଉ କିଛି ପଚାରିବାକୁ ନ ଥିବ ।

ମୁଁ ତଳକୁ ମୁହଁମୋଡ଼ି ପଚାରିଲି—ଆଉ କ'ଣ ହେବ ତମେ କହୁନ ? ସମସ୍ତେ କ'ଣ ଖାଲି ଲେକ୍‌ଚରର ହେବେ ? ତମରି ପରି ପଢ଼ିଲେ, ଲେଖିଲେ ଏସବୁ କାମ କରିବ କିଏ ? ତମେ ତ ଟିକିଏ ଖରା ସହିପାରିବନି । ଛତା ନେଇ ଯିବ । ଇଞ୍ଚା ମୁଣ୍ଡୋଉନି । ମଜା ପାଇବ ଯେ । ଫାଁ ହେଇ ପଡ଼ିଯିବ ।

ବାପାଙ୍କ ହାତରୁ ଚା' କପ୍ ବଢ଼େଇ ଦଉଦଉ, ମା' ଏତେ ଜୋରରେ ହସିଲି ଯେ, ଚା' ଉଡ଼ିହେଇଗଲା । କହିଲି—ଏଥର ତମ ପୁଅକୁ ବୁଝା ।

ବାପା ହସି ହସି କହିଲେ—ବୁଝିଲ, ସେ ତ ମେଞ୍ଚଡ଼ି ପିଲାଟିଏ । ବୁଝିବାର ବୟସ ହେଇନି । ଯୋଉମାନେ ବୁଝନ୍ତି—ସେଇମାନେ ବେଶୀ ଭୁଲ୍ କରନ୍ତି । ସେମାନେ ବାହାରେ ଯାହା ଦେଖିବେ, ସେଇକଥା କହିବେନା । ଘର ଭିତରଟା ସେମାନଙ୍କୁ ଭଲ ଲାଗେନା । ଅନ୍ୟମାନଙ୍କ ସହିତ ସେମାନେ ନିଜକୁ ତୁଳନା କରିବାକୁ ଭଲପା'ନ୍ତି । ଅଧିକ ହେଲେ ଫୁଟାଣି ମାରନ୍ତି । କମ୍ ଥିଲେ ମନମାରି ବସନ୍ତି । ଦୁଃଖ କରନ୍ତି । କାନ୍ଦନ୍ତି । ସେ କହିବ । କହିବାକୁ ବାଧ । ଆମେ ଏତେ ସହଜରେ ସେସବୁ ବଦଳେଇ ଦେଇ-ପାରିବାନି ।

ମତେ କହିଲେ—ବାପାରେ, ସବୁ କାମ ସମାନ । ସବୁ ମଣିଷ ସମାନ । ସବୁ ପିଲା ସମାନ । ତେବେ ଆମ ଭିତରେ ଠକ, କର୍ମକୁଣ୍ଠୀମାନଙ୍କ ସଂଖ୍ୟା ବେଶୀ । ସେମାନେ ସବୁ ଅସୁବିଧା ସୃଷ୍ଟିର କାରଣ । ତୁ ନିଜେ କହ, ତତେ ମୁଁ, ମା' କିମ୍ବା ସାର୍‌ମାନେ ଯୋଉ ପାଠ ଦଉଛୁ, ତୁ ଠିକ୍ ସମୟରେ ମନୋଯୋଗ ଦେଇ କରୁଛୁ କି ? ପଢ଼ିଲାବେଳେ ଖେଳୁନୁ ? ଅନ୍ୟ କଥା ଭାବୁନୁ ? ତମ ସାର୍‌ମାନେ ମଧ୍ୟ ଯେମିତି ପଢ଼େଇବା କଥା ପଢ଼ଉଛନ୍ତି ? ଠକୁ ନାହାନ୍ତି ? ସମସ୍ତେ ଟିଉସନ କରୁ ନାହାନ୍ତି । ଟିଉସନ ପଢ଼ା ଆଉ କ୍ଲାସ୍ ପଢ଼ା ସମାନ କି ? ତୋର ମା' ସାଙ୍ଗରେ ଯୋଉ ଲେକ୍‌ଚରମାନେ ଅଛନ୍ତି, ସେମାନେ କ'ଣ କରୁଛନ୍ତି ତୁ ନିଜେ ଦେଖୁଛୁନା ? ସେମାନେ ସବୁବେଳେ ତାସ୍ ଖେଳୁଛନ୍ତି, କଳି କରୁଛନ୍ତି, ବାଡ଼ିଆପିଟା ହଉଛନ୍ତି । କାଠ, ଗହମ, ଗୋଡ଼ି ବେପାର କରୁଛନ୍ତି । ପଢ଼ିବାର ନାଁ ଧରୁ ନାହାନ୍ତି । ତାଙ୍କ କାମ ହେଲା ଠାଉଠରି କରିବା ।

ମୁଁ କହିଲି—ବାପା, ସେ ମାମୁମାନେ ଭାରି ଅଭଦ୍ର କଥା କୁହାକୁହି ହେଉଛନ୍ତି । ନନ ଦେଖାଦେଖି ହଉଛନ୍ତି । କଲେଜରେ ନା ସବୁବେଳେ ତାସ୍ ଖେଳୁଛନ୍ତି । ମୁଁ ଦେଖିଚି ପରା ।

ମୋ କଥା ଶୁଣି ମା' ରାଗିଗଲା । ଧମକେଇ କହିଲା—ସେତୁ ଟୋକା ସବୁ ଦେଖୁଛି । ମିଛୁଆ ।

ବାପା କହିଲେ—ଦେଖ, ପିଲାଟାକୁ ମିଛୁଆ ବୋଲି କୁହନା । ସେ ଯାହା ଦେଖିଛି ସେଇୟା କହୁଛି । ମୁଁ ତ ସେମାନଙ୍କର କାଣ୍ଡକାରଖାନା ନିଜେ ଦେଖୁଛିନା । ଏମାନେ ପରା କପି ଲେଖି ପିଲାଙ୍କୁ ଦଉଛନ୍ତି । ଆଉ ଯାହା ଯାହା କରୁଛନ୍ତି—କହିହବନି । ତାକୁ ଗାଳିଦିଅନା । ସତ କହିବାଟା ଦୋଷ ନୁହେଁ । ବୁଝିଲୁ ବାପା, କେବଳ ତୋ ଲେକ୍‌ଚରର ମାମୁ ବା ସାର୍‌ମାନେ ନୁହଁନ୍ତି, ଇଞ୍ଜିନିୟର, ଡାକ୍ତର, ଅଫିସର, ନେତା, ମନ୍ତ୍ରୀ, ବଣ୍ଟରକ ସମସ୍ତେ ସେମିତି ଖରାପ କାମ କରୁଛନ୍ତି । ସମସ୍ତେ ଖାଲି ଟଙ୍କା ଟଙ୍କା ହେଇ ମରି ଯାଉଛନ୍ତି । ନିଜେ ସୁଖ କରୁଛନ୍ତି । ଅନ୍ୟମାନଙ୍କୁ ଭଲ ପାଉନାହାନ୍ତି । ଏମାନେ ସବୁ ଜାତି ଆଉ ଦେଶର ଶତ୍ରୁ । ଏମାନେ ଠକ, ଚୋର, ବଦମାସ୍ । ଠାକୁର ଏମାନଙ୍କୁ ଜମାରୁ ଭଲ ପାଆନ୍ତିନି । ଜୀବନସାରା ଖାଲି ହଇରାଣ ହଉଥାନ୍ତି । ଯେଉଁମାନେ ଅନ୍ୟର ସେବା କରନ୍ତି, ଠିକ୍ ଠିକ୍ କାମ କରନ୍ତି, ସେମାନେ ସତରେ ଭଲରେ ରୁହନ୍ତି । ସେମାନଙ୍କ ସଂଖ୍ୟା ବହୁତ କମ୍ ।

ତୁ ପଢ଼ୁଚୁ—ଚୋରି କରିବା ମହାପାପ । ମିଛ କହିବା ମହାପାପ । ସତ କହିଲେ, ଭଲ କାମ କଲେ, ଅନ୍ୟର ଉପକାର କଲେ—ସମସ୍ତେ ଭଲପା'ନ୍ତି । ତୁ ତ ସମସ୍ତଙ୍କୁ ଭଲପାଉଚୁ । ସମସ୍ତେ ତତେ ଭଲ ପାଉଛନ୍ତି । ତୁ ଡାକ୍ତର ହେଇ ରୋଗୀମାନଙ୍କର ସେବା କଲେ, ଇଞ୍ଜିନିୟର ହେଇ ଭଲ କାମ କଲେ, ଲେକ୍‌ଚରର୍ ହେଇ ଭଲ ପଢ଼େଇଲେ, ନେତା ହେଇ ଲୋକମାନଙ୍କର ସୁଖଦୁଃଖରେ ଭାଗୀ ହେଲେ ସୁଖରେ ରହିବୁ । ପଇସା-ଫଇସା କ'ଣ ହେବ ? ତୁ ନିଜେ କହ, ଭଲ ମଣିଷ ହେବା ଭଲ ନା ଖରାପ ଇଞ୍ଜିନିୟର ହେବା ଭଲ ? କହ ।

—ଭଲ ମଣିଷ ହବା ।

—ଆଉ ତୁ ଇଞ୍ଜିନିୟର ହେବୁ ବୋଲି କହୁଚୁ ?

—ଇଞ୍ଜିନିୟରମାନେ କ'ଣ ମଣିଷ ନୁହନ୍ତି, ଚୋର ?

—ମୁଁ ଇଞ୍ଜିନିୟରମାନଙ୍କୁ ଚୋର ବୋଲି କହୁନି । ସେମାନେ ତ ଦେଶର କମ୍ ଉପକାର କରୁ ନାହାନ୍ତି । ମାତ୍ର ଭଲ ମଣିଷ ନ ହେଲେ, ଭଲ ଇଞ୍ଜିନିୟର ହେଇପାରିବୁନି ।

ମୁଁ ମୁହଁଫୁଲେଇ କହିଲି—ଜାଣିଲ ବାପା, ମୁଁ କିଛି ହେବିନି । କାରଣ—ମୁଁ ଯାହା ମାଗିଲେ ତମେ କିଛି ଦେଉନ । ତମକୁ ମାଗିଲେ କହିବ—ପଇସା ନାହିଁ । ମା’କୁ ମାଗିଲେ ସେ କହିବ—ପଇସା ନାହିଁ । ପଇସା ନ ଦେଲେ କିଛି ହେଇପାରିବନି । ତମ ମନ ମୁଁ ଲେକ୍‌ଚରର ହେବିନା । ମା’କୁ କହୁଥିଲ, ମୁଁ ଶୁଣିଛି । ଜମାରୁ ଲେକ୍‌ଚରର୍ ହେବିନି । କିଏ ସବୁବେଳେ ବସି ପଢ଼ିବ ? ଲେକ୍‌ଚରର୍ ତ ଲେକ୍‌ଚରର୍, ପୁଣି ଓଡ଼ିଆ ଲେକ୍‌ଚରର୍ । ଛି, ଓଡ଼ିଆ ଦେଡ଼ ଗୋଡ଼ିଆ, କର୍ମ କୋଡ଼ିଆ । ସେଇଟା ଗୋଟାଏ ପାଠ । ଲେକ୍‌ଚରର୍ ହେଇଛ— ସାଇକେଲଟିଏ ବି ଦେଇପାରୁନ ।

ମା’ କହିଲା—ବାପା ତ ସାଇକେଲ୍ ଶିଖି ନାହାନ୍ତି । ପୁଅକୁ ଦେଖ, ସାଇକେଲ ସାଇକେଲ ହେଇ ପାଣି ପିଉନି । ବଡ଼ ହେଇଯା’, ସାଇକେଲ କିଣିଦବା । ବାପାଙ୍କୁ ପଛରେ ବସେଇ ନବାଆଣିବା କରିବୁ ।

ମା’ କଥା ଶୁଣି ବାପା ହସିଲେ । ବହି ଖଣ୍ଡେ ଧରି ପଢ଼ା ଆରମ୍ଭ କରିଦେଲେ ।

ତାଙ୍କ କଥାଗୁଡ଼ାକ ଶୁଣିବାଲାଗି ଖୁବ ଭଲ ଲାଗୁଥିଲା । ହେଲେ ଆଖି ଆଗରେ ନାଚଯାଉଥିଲା ମାଉସୀମାନଙ୍କର ଶାଢ଼ି, ଗହଣା, ବେଶପୋଷାକ, ଗାଡ଼ି, ଟି.ଭି., ଭି.ସି.ଆର୍., ଫ୍ରିଜ୍, କ୍ୟାମେରା, ମାମିନା, କୁନ୍‌ମୁନ୍, ଫୁକୁନମାନଙ୍କର ସାଇକେଲ, ଜାମା, ପ୍ୟାଣ୍ଟ, ଜୋତା, ମୋଜା, ଛତା ଆଉରି କେତେ କେତେ ଜିନିଷ । ବାପାଙ୍କ ଉପରେ ପୁଣି ରାଗ ହେଲା । ଭାବିଲି—କି ଯେ ବାପା, ଯାହା ମାଗିଲେ କହିବେ—ପଇସା ନାହିଁ । ସୁଉଦୁ କାର୍ପଣ୍ୟ ।

ମୋପେଇଁ ପଇସା ନାହିଁ । ବହି କିଣିଲା ବେଳକୁ ?

## ।। ଦଶ ।।

ଆଜି ଖରାବେଳଟା ସେଇମାନଙ୍କ ସାଙ୍ଗରେ ଗଲା । ମାତ୍ର କିଛି ଲାଭ ହେଲାନି । ଶେଷକୁ ବାପା ଗାଳି ଖାଇଲେ । ମନେ ମନେ ଭାବିଲି—ଭଲ ହେଇଛି । ବାପାଙ୍କୁ ସେୟା ଦରକାର । ସମସ୍ତେ ତ ଆଉ ସମାନ ନୁହନ୍ତି । ସେ କାହିଁକି ତାଙ୍କ ସାଙ୍ଗରେ ଲାଗୁଥିଲେ କି ?

ବାପା ଖାଇ ବସିଥିଲାବେଳେ ଗୋଟାଏ ଛେଳି ଆଉ ତା'ର ଦୁଇଟା ଛୁଆ ଆମ କଣ୍ଟାବାଡ଼ ଭିତରେ ଗଳି ବାଡ଼ ଭିତରକୁ ପଶିଆସିଲେ । ସାଙ୍ଗେ ସାଙ୍ଗେ ଆରମ୍ଭ କରିଦେଲେ ସେମାନଙ୍କର କାମ । ବାପା ଯେମିତି ଦେଖିଛନ୍ତି—ରାଗରେ ତ ପୂରା ନିଆଁ । ମୁଁ ଆଉ ଟୁଲୁ ତାଙ୍କ ପାଖରେ ବସିଥିଲୁ । ଆମକୁ କଅଁ ଲେଇ କହିଲେ—ବାପାରେ ଗଲା ସେଗୁଡ଼ାଙ୍କୁ ଧଇଲ । ଏତେବେଳେ ଆଖିରେ ପଡ଼ୁଛନ୍ତି । ସେ ଶଳାଙ୍କୁ ପାନେ ନ ଦେଲେ ହବନି । ଖଣ୍ଟଗୁଡ଼ାକ ନିଜ ବାଡ଼ିରେ ତ ଶାଗ ପଟାଳିଏ କି ଲଙ୍କା ଗଛଟିଏ ତ କରିବେନି । ଯିଏ କଲା—ତାକୁ ମୂଳରୁ ସଫା କରିଦେବେ । ବ୍ୟାଗ୍ ଝୁଲେଇ ବଜାରରେ ତେଲିଙ୍କ ପାଖରେ ଦାନ୍ତ ନିକୁଟୁଥିବେ । ଧରିକରି ଆଗ ବାନ୍ଧି-ପକାଅ । ତା'ପରେ ଖାଇବ । ଖାଣ୍ଟି ଦୁଧ ବି ମିଳିବ ।

ବାପାଙ୍କ କଥା ଶୁଣି ଆମେ ଦୁଇ ଭାଇ କାମରେ ଲାଗିଗଲୁ । ଛେଳିଗୁଡ଼ାଙ୍କର ମୁହଁ ଏତେ ଉପରକୁ ହେଇଯାଉଥିଲା ଯେ, ଆମ ପିଲା ଦୁଇଟାଙ୍କୁ ଜମାରୁ ଖାତିର କଲେନି । ମେଁ ମେଁ ହେଇ ଶାଗ, ବାଇଗଣ ଓ ଲଙ୍କାଗଛରୁ ପୁଳାକୁପୁଳା ଖାଇଯାଉଥାନ୍ତି । ପେଟରେ ଯେମିତି ନିଆଁ ଜଳୁଥାଏ । ଖପ୍‌ଖାପ୍ କରି ଆମେ ଦୁଇଟା ଛୁଆଙ୍କୁ ଧରିପକେଇଲୁ । ଯେତେ ଟାଣିଓଟାରି ହେଲେ ବି ଆମ ହାତରୁ ଖସିଯାଇ ପାରିଲେନି । ବାପା ରାଗିକି କହିଲେ—ଯ୍ଯାଲ୍ପ ଖାଇଗେଧୁ, ମା'ଟାକୁ ଧରିଲେ ସିନା ଛୁଆଗୁଡ଼ାକ ଆପେ ଆପେ ରହିଯିବେ । ଧର ତାକୁ । ବାପାଙ୍କ ଡରରେ ଛୁଆଙ୍କୁ ଛାଡ଼ିଦେଇ ପୁଣି ମା'କୁ ଗୋଡ଼େଇଲୁ । ହେଲେ ତାକୁ ଆଉ ଧରିପାରିଲୁନି । ସେ ଯୋଉ ବାଟ ଦେଇ ଆସିଥିଲା—ବେଶ୍ ଆରାମରେ ସେଇ ବାଟରେ ଖସିଗଲା । ମହା ବଦମାସ୍ ଛେଳି ।

ବାପା ପୁଣି ବିରକ୍ତ ହେଇ କହିଲେ—ଯ୍ଯାଲ୍ପ ଖାଇବାକୁ, ଖେଳିବାକୁ ତ କଷ୍ଟ ହେଉନି । ଛେଳିଟାକୁ ଧରିପାରୁନି । ହ୍ୟାକ୍ ଶଳା । ଆରେ ମା' ପଛେ ପଛେ ଏ ଛୁଆଗୁଡ଼ାକ ବି ପଳେଇଯିବେ । ପିଲାଗୁଡ଼ାଙ୍କୁ ଧର—ମା ପୁଣି ବଳେ ବଳେ ଆସିବ । ଆଉ କୁଆଡ଼େ ଯିବନି । ଧରୁଛ ନା ଚାହିଁଛ ?

ଆମେ ପୁଣି ଛୁଆମାନଙ୍କୁ ଗୋଡ଼େଇଲୁ । ଗୋଟାଏ ଗଳିବାଟ ଦେଇ ପଳେଇ ଯାଉଥିଲା । ମୁଁ ମାଡ଼ିବସିଲି—ଠିକ୍ ବାଡ଼ ମଝିରେ । ଆରଟାକୁ ଟୁଲୁ ଧଇଲା । ସେମାନେ ଖାଲି ଗ୍ଭଟିପିଟି ହଉଥାନ୍ତି । ମେଁ ମେଁ ହେଇ ଚିଲଉଥାନ୍ତି ।

ତାଙ୍କୁ ଘୋଷାରି ଘୋଷାରିକା ଆମେ ବାପାଙ୍କ ପାଖକୁ ଆଣିଲୁ । ମା’ ଆଣି ଦଉଡ଼ି ଦଇଟା ଦେଲା । ବାପାଙ୍କ କଥା ଅନୁସାରେ ସେମାନଙ୍କୁ ନେଇ ଗୁହାଳରେ ବାନ୍ଧି ପକେଇଲୁ ।

ଖାଉଥିଲାବେଳେ ବାପା ଖାଲି ଗରଗର ହେଉଥା’ନ୍ତି । କହୁଥାନ୍ତି— ଯ୍ୟାଲୁ କୋଡ଼ିଆ ଶଳେ । ନିଜେ କରିବେନି କି କାହାକୁ କରେଇଦେବେନି । କ’ଣ ଟିକେ କଲେ ଋଷେଇଦେବେନି । ଗାଈଗୋରୁ ପୂରେଇ ଖୁଆଇବେ, ନ ଥିଲାବେଳେ କୋଉ ଛଟକରେ ଚୋରି କରିନେବେ । ଶଳା ଖମାରିଆ ଜନ୍ତୁଗୁଡ଼ାକ ବାଡ଼ ଭାଙ୍ଗିବା ଆଉ ଗଛବାରେ ବି ଗୁରୁ । ପୂରା ତାଲିମପ୍ରାପ୍ତ । ହେଇ୍ ହେଇ୍ କହିଲେ ବି ଡ୍ୟାସ୍‌ରେ ଖାତିର କରିବେନି । ଘୁଳାଏ ନେବେଇ ନେବେ । ଯ୍ୟେ ପଶୁଗୁଡ଼ାଙ୍କୁ ବାନ୍ଧିକରି, ମାରିକରି କି ଲାଭ ? ତାଙ୍କ ମାଲିକ-ମାନଙ୍କ ପିଠିରେ ଭଲକରି ଥୋଇବା କଥା । ଠକଗୁଡ଼ାକ ଯ୍ୟାଲୁ । ଜଙ୍ଗଲରୁ କାଠ ଚୋରି କରିବେ, ମଦ ପିଇବେ । ବାସ୍ , ଏତେ କାମ କରୁଛି କିଏ ? ବାଧିବ !

ବାପା ବକି ଯାଉଥାନ୍ତି---ମା’ବି ତାଙ୍କ ସହିତ ତାଳ ଦଉଥାଏ । ଶାଗ, ବାଇଗଣ, ଲଙ୍କା ଗଛ ପ୍ରତି ତା’ର କ’ଣ କମ୍ ଲୋଭ କି ? ଗଛମାନେ ତା’ର ଜୀବନ ଯେମିତି । ସେଥିରୁ ପତ୍ରଟିଏ ଝଡ଼ିଗଲେ, ଝାଉଁଳିଗଲେ କି ଛିଡ଼ିଗଲେ ତା’ର ଯେମିତି କ’ଣ ହେଇଯାଏ । ବାପା ସିନା ନଗେଇବେ, କୋଡ଼ିବେ, ହୁଡ଼ା ଦେବେ, ହେଲେ ପାଣି ଦେଲାବେଳକୁ ମା’ । ମୂଳ ଟିକିଏ ଶୁଖେଇବନି । ଗଛ ମୂଳରେ ବି କଂସାବାସନ ଧୋଉଥିବ । ଅଥଚ ପ୍ରତି ମାସରେ ସେ କଲେଜ କି ଅନୁଗୋଳ ଯାଉଥିଲାବେଳେ ଛେଳି ଆଉ ଗାଈ-ମାନେ ସେମାନଙ୍କ କାମ କରୁଥିବେ । ମାଆ ଆସି ଖେଣ୍ଡା ଗଛମାନଙ୍କୁ ଦେଖି ବୋବାଇବ । ଆମ ଉପରେ ଗରଗର ହେବ । ସେମାନଙ୍କୁ ଗାଳିଦେବ । ତା’ପରେ ପାଣି ଢାଳିବ । ଯ୍ୟେ କି କାମ କେଜାଣି ?

ବାପାଙ୍କ ଗାରୁ ଗାରୁ ସାଙ୍ଗକୁ ଛେଳିଗୁଡ଼ାଙ୍କର ମେଁ ଏଁ– ମେଁ ଏଁ । ମା’ଟା ବାଡ଼ ଆରପଟରେ ବି ବୋବାଳି ଛୁଉଥାଏ । ଢଇ ଗୁହିପୁଲା ପତ୍ର ପାଟିରେ ପୂରେଇ ପାକୁଳି କରୁଥାଏ, ପୁଣି କହୁଥାଏ ମେଁଏ, ମୁକୁ ମୁକୁ ମେଁ ମୁକୁମୁକୁ । ଯ୍ୟେ ଶଳା ଛୁଆଗୁଡ଼ାକ ବେଶୀ ଚଲେଉଥାନ୍ତି । ବାପା ଆମକୁ କହିଲେ—ଏଥର ବାରେ ଗଲ, ସେ ହାରମିଟାକୁ ଧର । ବେଶ୍ ବଦମାସି

କରୁଛି । ରଖେଇବସେଇ ଦଉନ । ଦାଇଟା ଡାଳ ଧରି ତା ଆଗରେ ଦେଖାଅ । ସେ ଯେମିତି ଖାଇବାକୁ ଆସିବ, ମାଡ଼ିବସିବ । ଶାଳୀ କେଡ଼େ କେଡ଼େ ପନ୍ଥା କରୁଛି । ଧରି ଦୁଇଁବା । ଗୃହ କରିବା । ମା'କୁ କହିବା ଘିଅ କରିବ ।

ଆମେ କାଠ ଗେଟ୍ ଖୋଲି ବାହାରକୁ ଗଲୁ । ମୁଁ ଡାଳ ଭାଙ୍ଗି ହାତରେ ଧଇଲି । ତା ଆଗରେ ଖାଲି ହଲେଇଲି । ଆମକୁ ଦେଖି ସେ ପୁଣି ଆଗକୁ ଦୌଡ଼ିଗଲା । ମୁଁ ଯେମିତି ଦୌଡ଼ିବାକୁ ଆରମ୍ଭ କରିଛି, ବାପା ସ୍ୟାଙ୍ଗୁ ପାଟିକଲେ—ଯୁଆଳିଖ ଖାଇ ଗେଧୁ , ତମକୁ ପରା କହିଲି ଚୂ ଚୂ କରି ଧର । ଦୋଉଡ଼ିଲେ ତାକୁ ଧରିପାରିବ ? ଧଇଲି ଦେଖିବା ।

ଆମେ ତାକୁ ଚୁ , ଚୁ , ଆ, ଆ କରି ଡାକିଲୁ । ତା ଆଗରେ ଡାଳ ହଲେଇଲୁ । ସେ ଡରି ପନ ଖାଇବାକୁ ଆରମ୍ଭ କଲା । ଖାଉଥାଏ ଏଯୁାଡ଼େ କୁଁ କୁଁ ହଉଥାଏ । ଯେମିତି ଭଲକି ଖାଇଛି—ମୁଁ ଚଟ୍‌କିନା ତାକୁ ମାଡ଼ି-ବସିଲି । ମୋ ଦେଖାଦେଖି ଝୁଲୁ ବି ଖାରଙ୍କପରି ମାଡ଼ିବସିଲା । ସେ ଗୁଣ୍ଟିପିଟି ହଉଥାଏ ଖସିଯିବାପାଇଁ । ମା' ସାଙ୍ଗେ ସାଙ୍ଗେ ଆମକୁ ଦଉଡ଼ି ଆଣି ଦେଲା । ଦଉଡ଼ିକୁ ଭଲକରି ତା ବେକରେ ବାନ୍ଧି ଘୋଷାରି ଘୋଷାରିକା ଘର ଭିତରକୁ ଆଣିଲୁ । ତା ଛୁଆଙ୍କ ପାଖରେ ବାନ୍ଧି ପକେଇଲୁ ।

ବାପା କହିଲେ—ବାପାରେ, ସେଗୁଡ଼ାକୁ ନେଇ ବାହାରେ ସେ ଗଛ ଗୁଣ୍ଡିରେ ବାନ୍ଧପକାଅ । ମେଁ ମେଁ ହେଇ ଆମକୁ ରଖେଇ ଥୋଇଦେବେନି । ଶଳା ଅଛଦରା ଜନ୍ତୁ । ତାଙ୍କ ଆଗରେ ଗୁଡ଼ାଏ ଡାଳଭାଙ୍ଗି ଗଦା କରିଦିଅ । ଖାଉଥା'ନ୍ତୁ, ବୋବାଉଥା'ନ୍ତୁ । ଖାଲି ପେଟରେ ଘରକୁ ଯାଇଥାନ୍ତେ । ଖାଆନ୍ତୁ ପେଟ ପୂରେଇ । ମୁଁ ଖାଇସାରେ, ତା'ପରେ ଯୋଉ କଥା ।

ଆମେ ସେମାନଙ୍କ ଆଗରେ ଡାଳପନ ଭାଙ୍ଗି ଗଦା କରିଦେଲୁ । ମୁଁ ଭିତରକୁ ଆସିଲି । ମାନ ଝୁଲୁ ଆସିଲାନି । ତାଙ୍କର ପାଖରେ ବସିରହିଲା । ଛୁଆ ଦାଇଟାଙ୍କୁ ଆଉଁଶି ଦେଲା । ମା ଯେତେ ଡାକିଲେ—ଉଁ କି ଚୁଁ କଲାନି ।

ବାପା ହସି ହସି କହିଲେ—କ'ଣ ବାପା, ଗୋଟାଏ କାଟିଦିଅ । ସେଇ ଗ୍ରେଟଟାକୁ । କଅଁଳ ମାଉଁସ । ଭାରି ବଢ଼ିଆ ଲାଗିବ । ହାତ ତକାଏନି ଗ୍ରେଡ଼ବେଇଯିବ । ମା' ଦାଇଭାଇଙ୍କର ତ କେବେ ବାର । କ'ଣ, ହଉ ।

ଆଉ କୋଉଦିନ ହୋଇଥିଲେ ସେ ଠକ୍‌କିନା ବାପାଙ୍କ କଥାର ଜବାବ ଦେଇଥାନ୍ତା । କିଛି ନ କହି ଗୁମ୍‌ମାରି ବସିଲା । ମା' ଯେତେ ଡାକିଲେ ବି ଆସିଲାନି । ଶେଷକୁ ମା' ଯେମିତି ଯାଇ ତାକୁ କାଖ କରିଛି— ଖାଲି ଗ୍ଭିଟିପିଟି ହେଲା । ସେ ତାକୁ ଜବରଦସ୍ତ କୁଣ୍ଢେଇକି ଭାତଥାଳି ପାଖକୁ ଆଣିଲା । କୋଳରେ ବସେଇ ଖୁଆଇଦେଲା । ଯେମିତି ଭାତ ଗଣ୍ଡାଏ ତା ପାଟି ପାଖକୁ ଦେଇଛି, ମୁହଁ ବୁଲେଇଦେଲା । ଛଳ ଛଳ ଆଖିରେ ଛୁଆମାନଙ୍କ ଆଡ଼କୁ ଅନଷା କରି ରହିଲା ।

"ତୁ ବାପା ଖାଉନୁ କାହିଁକି ? ସେମାନଙ୍କୁ ପରା ଖାଇବାକୁ ଦେଇ-ଆସିଛୁ । ଦେଖ୍, ସେମାନେ କୁଁ କୁଁ ହୋଇ ଖାଉ ନାହାନ୍ତି ? ସେମାନେ ତ ଖାଉଛନ୍ତି ମନଖୁସିରେ । ତୁ କାହିଁକି ଖାଇବୁନି । ଖାଇଦେ ସୁନାବାପା ପରା ।" ବାପା କହିଲେ ।

ସେ ତଥାପି ଖାଇଲାନି ।

ବାପା ତାକୁ ବୁଝେଇ କହିଲେ—ଦେଖ୍ ବାପା, ସେମାନେ ଆମ ବାଡ଼ିରେ ପଶି ଶାଗ, ଲଙ୍କା, ବାଇଗଣ ଗଛ ସବୁ ଖାଇଗଲେ । ତୁ କ'ଣ ଖାଇବୁ ? ତୁ, ମୁଁ, ନନା ପଡ଼ିଆରୁ ଗୋବର ଗୋଟେଇଚେନା ? ମୁଁ ହାଣିଛି । ତମେ ଧାଇଁଭାଇଁ ମାଟି ଚୂନା କରିଛ । ଗୋଡ଼ି, ଘାସ ବାଛିଛ । ଗଛମୂଳରେ ଖତ, ଗୋବର, ସାର ଦେଇଛ । ପୋକ ମାରିଛ । ତମେ ସମସ୍ତେ ଟିଉବ୍‌ୱେଲରୁ ପାଣି ଆଣି ଦଉଛ । ତମେ ସବୁ କାମ କରିଛଟି ?

ସେ ମୁଣ୍ଡଟିଙ୍ଗାରି ହଁ କଲା ।

ଆମେ ଏତେ କଷ୍ଟ କରିଛେ । ଆଉ ସେମାନେ ଆସି ଆମ ଗଛଗୁଡ଼ାକ ଖାଇ ଯାଉଛନ୍ତି । ତତେ କ'ଣ ଭଲ ଲାଗୁଛି ? ଆଁ କ'ଣ କରିଛୁ ?

ସେ ମୁଣ୍ଡ ହଲେଇ ନାହିଁ କଲା ।

—ଭଲ ଲାଗୁନି ତ ଖାଇଦେ । ତା ପରେ ସେମାନଙ୍କୁ ଛାଡ଼ିଦବା ।

ସେ ଏଥର ରାଗିକରି କହିଲା—ତମେ କାହିଁକି ସେମାନଙ୍କୁ ବାନ୍ଧିଛ ଯେ ? ଛୁଆଗୁଡ଼ାକ ଖାଲି କୁଁ କୁଁ ହୋଇ କାନ୍ଦୁଛନ୍ତି । ତମେ ବନ୍ଧା ହଉନ । ମଜା ଲାଗିବ ।

ବାପା, ମା', ମୁଁ ସମସ୍ତେ ତା କଥା ଶୁଣି ହସିଲୁ ।

ସେ ଟିକିଏ ଅଭିମାନିଆ କଣ୍ଠରେ ପୁଣି କହିଲା—ତମକୁ ବାନ୍ଧିଲେ ତମ ମା'କୁ ଭଲ ଲାଗିବ ନୁହଁ ? ତମକୁ ବାନ୍ଧୁଛି ରୁହ କହି ବାପାଙ୍କ ପାଖକୁ ଧାଇଁଗଲା । ବାପା ହସି ହସି କହିଲେ—ଆ, ବାନ୍ଧେ, ମୁଁ କ'ଣ ମନାକରୁଛି କି ? ମୁଁ ତ ତୋ ପୁଅ । ବାପାମା'ତ ପୁଅଝିଅଙ୍କୁ ବାନ୍ଧନ୍ତି ।

ସେ କିଛି ନ କହି ପୁଣି ଚୁପ୍ ଚୁପ୍ ଛେଳିମାନଙ୍କ ପାଖକୁ ଚାଲିଗଲା । ବାପା ବୁଝେଇଲାପରି କହିଲେ—ହଉ ବାପା, ତୁ ସେମାନଙ୍କ ଆଗରେ ଆଉ ଦିଇଟା ଡାଳ ପକେଇଦେଇ ଆ । ଖାଇସାରିଲେ ସେମାନଙ୍କୁ ଖୋଲିଦବା, ଆ ।

ସେ ଆଉ କେଇଟା ଡାଳ ଭାଙ୍ଗି ସେମାନଙ୍କ ଆଗରେ ପକେଇଦେଲା । ପୁଣି ଆସି ବସିପଡ଼ିଲା ତା ଜାଗାରେ । ମା' ଯାଇ ଜବରଦସ୍ତି ତାକୁ କାଖେଇଲା । ମାତ୍ର ସେ ଗୋଡ଼ ଦିଇଟା ଏମିତି କାଇଦାରେ ଛନ୍ଦିଦେଲା ଯେ, ମା' ପଡ଼ୁ ପଡ଼ୁ ରହିଗଲା । ଦୁମ୍ ଦୁମ୍ କରି ତା' ପିଠିରେ ବିଧା କଷିଦେଲା । ତା ବାଳଧରି ଜୋର୍‌ରେ ଝିଙ୍କିଲା ଏବଂ ଶେଷରେ ଓହଳିପଡ଼ିଲା ତା ବେକରେ । ମା' କହିଲା—ମତେ ଭାରି କାନ୍ଦୁଛି ବାପା । ଦୁଷ୍ଟ ହଅନା । ଏତେ ବିରକ୍ତ କରନା । ସେମାନଙ୍କୁ ଖୋଲିଦବା । ତୁ ବେଶୀ ଚଗଲା ହେଲେ କଥା ନ ମାନିଲେ ବାପା ରାଗିବେ । କହିବେ ଝୁଲୁଟା ଗ'ପିଲା । ବାପା ମା'ଙ୍କ କଥା ମାନୁନ । ଛି, ସେମିତି କ'ଣ ହଅନ୍ତି ?

ବାପା ସେପଟୁ ବିରକ୍ତ ହେଇ କହିଲେ—କାହିଁକି ସେଇଟାକୁ ଏତେ ଗେହ୍ଲା କରୁଛ । ଅତି ବଦ୍‌ମାସି କରୁଛି । ତାକୁ ଛାଡ଼ିଦିଅ । ଯାହା ମନ କରୁଛି କରୁ । ତାକୁ ଆମେ ସମସ୍ତେ କହୁଚୁ—ତୁ ଖାଇସାରିଲେ, ସେମାନଙ୍କୁ ଛାଡ଼ିଦବା । ମେଞ୍ଚଡ଼ ଟୋକା ଖଣ୍ଡେ, କାହାରି କଥା ମାନୁନ । ଏତେ ଜିଦ୍ । ଛାଡ଼ ତାକୁ । ତମେ ଖାଇନିଅ । ଅତି ହଉଛି ।

ମା' ତାକୁ ଯେମିତି ଛାଡ଼ ଦେଇଛି—ସେ ପୁଣି ସେମାନଙ୍କ ପାଖକୁ ଚାଲିଗଲା । ଯେତେ ଡାକିଲେ ବି ଆସିଲାନି ।

ମା' ତା ପାଖରେ ଠିଆହେଇ ବାପାଙ୍କୁ କହିଲା—ତମେ ବାରୁ ଏଗୁଡ଼ାଙ୍କୁ ଖୋଲିଦେଲ । ଯାଆନ୍ତୁ । ଖୋଲି ନ ଦେଲେ ଏ ବଣଭାଲୁ ଉଠିବନି । ତମପରି ତା'ର କ'ଣ କମ୍ ଜିଦ୍ ? ଯାହା ବୁଝିଥିବ ସେୟା ।

ଛେଳିଗୁଡ଼ାକ ସବୁ ଖାଆନ୍ତି । ଟୁଲୁ ଖାଲି ଗୋବର ଗୋଟାଉଥାଉ । ପାଣି ଦଉ । ଚାଲ ବାପା, ଚାଲ, ବାପା ଏଥର ଖୋଲିଦେବେ ।

ସେ ତଥାପି ଉଠିଲାନି ।

ବାପା ଏଥର ଖୁବ୍ ରାଗିଯାଇ କହିଲେ—ତମକୁ ପରା ମନାକରୁଛି, କାହିଁ ତା ସାଙ୍ଗରେ ବକ୍ ବକ୍ ହଉଛ । ଖୋଇ ବଢ଼ିଯିବ । ଭୋକ କଲେ ବଳେ ବଳେ ଖାଇବାକୁ ମାଗିବନି ଯେ, ଏତେ କଥା । ଥାଉ, ତମେ ଖାଇନିଅ ।

ଟୁଲୁ ଆଉ ଖାଇବାକୁ ଆସିଲାନି । ମା' ଘର ଭିତରକୁ ପଳେଇ-ଆସିଲା । ସେ ବାଡ଼ିଖଣ୍ଡେ ଧରି ବସିରହିଲା ସେମାନଙ୍କ ପାଖରେ ।

ସେମାନେ ଖାଉଥାନ୍ତି । ମେଁ ମେଁ ହେଇ ବୋବାଉଥାନ୍ତି । ବାପା, ମୁଁ ପୁଣି ସେମାନଙ୍କ ପାଖକୁ ଗଲୁ । ବରକୋଳି, ନାଗାର୍ଜୁନ ଡାଳ ଭାଙ୍ଗି ସେମାନଙ୍କ ପାଖରେ ପକେଇଲୁ । ଦିନସାରା ବୁଲିଥିଲେ ସେମାନେ ଏତେ ଖାଇବାକୁ ପାଇ ନ ଥାନ୍ତେ । ଖାଇ ଖାଇ ପେଟଗୁଡ଼ାକ ଟୁଂ ହେଇ ଯାଇଥାଏ । ସେମାନେ ଧକେଉଥିବାର ଦେଖି ବାପା ସେମାନଙ୍କୁ ପାଣି ଆଣି ଦବାକୁ କହିଲେ । ଯେମିତି ପାଣି ବାଲ୍ଟିଏ ଆଣି ଥୋଇଛି—ଚଁ ଚଁ କରି ପିଇଗଲେ ତିନିଟାଯାକ । ଭାରି ଶୋଷ କରୁଥିଲା ବୋଧହୁଏ । ପୁଣି ବାପା କହିଲେ—ଗଲୁ ବାପା, ଡାଳଟିଏ ଆଣ ତ । ଆଣ, ଦୁଧ ଦୁହିଁବା । ବକଟାରାଣୀ ହାଣ୍ଡି ଆପହଞ୍ଚା କରିଛି । ମୁଁ ଧାଇଁଯାଇ ଡାଳ ନେଇଆସିଲି । ବାପା ପାଖରେ ବସି ଯେମିତି ତା ଚେରରେ ହାତ ମାରିଛନ୍ତି, ସେ ଫକ୍‌କନା ଡେଇଁପଡ଼ିଲା । ତାଙ୍କ କଥାମାନି ମୁଁ ପଛରେ ବସି ଗୋଡ଼ ଦିଇଟା ଟାଣି ଧରିଲି । ତା ବେକ ଆଉଁଶି ଦବାଲାଗି ଟୁଲୁକୁ ଯେତେ ଗେହ୍ଲେଇହେଇ ଡାକିଲେ ବି, ଜମାରୁ ହୁଙ୍କିଲାନି । ଏଣେ ଛେଳିଟା ଖାଲି ମେଁ ମେଁ ରଡ଼ି ପକେଉଥାଏ । ବାପା ତା ଚେରକୁ ଜୋରରେ ଟାଣିଲେ । ମାତ୍ର ଦୁଧ ବାହାରିଲାନି । ସବୁଯାକ ମାଲି ଛୁଆଗୁଡ଼ାକ ପିଇ ଯାଇଥିଲେ ।

ବାପା ରାଗିକରି କହିଲେ—ହାରାମି, ଯୁଦୁ ଚୋରଣୀଟା । ଜର୍ସି ଗାଈ ଭଳିଆ ହେଇଛି । ପହଞ୍ଚା ଖାଲି । ଏଥର ଘରକୁ ଚାଲ । ଏଗୁଡ଼ାକ ସେମିତି ବନ୍ଧା ହେଇଥାନ୍ତୁ । ମାଲିକ ଆସୁ, ତା'ପରେ ଯୋଉ କଥା । ପଶୁଗୁଡ଼ାକୁ ନ ମାରି ସେଇ ମାଲିକ ମହାତ୍ମାମାନଙ୍କୁ ଔଷଧ ଦବା କଥା ।

ବାପା ପିଣ୍ଡା ଉପରେ ବସି ପତ୍ରିକା ପଢ଼ିଲେ । ମୁଁ ବହି ଧରିଲି । ଝୁଲୁ ଅଖିଆଅପିଆ ଛୁଆମାନଙ୍କ ପାଖରେ । ଟିକିଏ ପରେ ଟିକିଏ ଖାଲି ମେଁ, ମେଁ ଶବ୍ଦ । ମା' ମେଁ କହିଲାମାତ୍ରେ ଛୁଆଗୁଡ଼ାକ ସୁଲୁ ସୁଲୁ ହେଉଥାନ୍ତି । ମା' ବିରକ୍ତ ହୋଇ କହିଲା—ଏ ଲଙ୍କା ଛେଳିପଲ ରଖେଇବସେଇଦେବେନି । ଏ ବଜାଖୁଣ୍ଟୋକାଟା ସେଇଠି ବସିଛି । ଭାରି ସେନ୍‌ସିଟିଭ୍ । ଏତେ ଜିଦ୍‌ଖୋର । ଦେଖୁନ, କେମିତି ମୁହଁ ଓହଳେଇ ବସିଛି, ଏମିତି ଅଜବଛୁଆ ମୁଁ କୋଉଠି ଦେଖିନି । ଶୀତଟା ଆସି ବାଜିଲାଣି, ଭୋକ ଲାଗୁନି । ତମେ ଗଲ, ଖୋଲିଦିଅ, ଯା'ନ୍ତୁ ଏଗୁଡ଼ାକ । ତମ ପୁଅମାନଙ୍କର ଗୋବର ଗୋଟେଇବା, କି ମୋର ପାଣି ବୋହିବା ଦରକାର ନାହିଁ । ଏ ଠାପୁଆ ରାଜ୍ୟରେ କାହାକୁ କ'ଣ କହିବ ? ସବୁଗୁଡ଼ାକ ତ ଉକାଣ୍ଟ ।

ବାପା ଦୀର୍ଘଶ୍ୱାସ ପକେଇ କହିଲେ—କେବଳ ଏମାନେ ନୁହନ୍ତି ସମଗ୍ର ଦେଶଟା ସେୟା । ମୁଁ ନିଜେ ବାଲ୍ୟ, ଝିଅ ଧରି କଲେଜ ପଢ଼ୁଆ, ରାସ୍ତା ଉପରୁ ଗୋବର ଗୋଟେଉଛି । ପିଲାମାନଙ୍କୁ ସାଙ୍ଗରେ ନଉଛି । ମାଟି ହାଣୁଛି । ଗାଁକୁ ଗଲେ ଗୋବର ଟୋକେଇ ମୁଣ୍ଡେଇ ବିଲକୁ ଯାଉଛି । ଧାନ କାଟୁଛି, ବାଛୁଛି । ତା'ର ଅର୍ଥ ନୁହେଁ ଯେ, ମୁଁ ବଜାରରୁ କିଣି ପାରିବନି କି ମୂଲିଆ ଲଗେଇ ପାରିବନି । ନିଜ କାମ ନିଜେ କରିବାରେ ଗୋଟେ ମଜା ଅଛି । ନିଜ କିଆରିରୁ ପରିବା ତୋଳିବା, ଶାଗ କାଟିବା, ଲଙ୍କା ଛିଣ୍ଡେଇବାରେ ଯୋଉ ଆନନ୍ଦ, ତାହା ତ ବଜାର ଛକରୁ ମିଳେନା । ବ୍ୟାଗ୍ ନେଇ ବଜାରରୁ ଚାଉଳ, ମୁଗ, ବିରି କିଣିଲାବେଳେ ଯୋଉ କଷ୍ଟ ଲାଗେ, ଓଃ ଛାଡ଼ି ସେ କଥା । କିନ୍ତୁ ଆମ ବାବୁମାନଙ୍କର ଏସବୁ କଷ୍ଟ ପୋଷେଇବନି । ଏସବୁ ଗ୍ରେଡ଼ ଲୋକମାନଙ୍କର କାମ । ମୁଁ ଜାଣେ ଏ ପାଠୁଆ ପିଲା, ଇଞ୍ଜିନିୟର, ଡାକ୍ତର, ଅଫିସର ଓ ଅଧ୍ୟାପକ କଲୋନିର ନିର୍ମଳ ଆଖିମାନେ ମତେ ଠଟ୍ଟିଲ୍ କରୁଥିବେ । ନାକ ଟେକୁଥିବେ । ସବୁ ଜାଣିଛି । ଗୋବର ଗୋଟେଇବାକୁ କହିଲେ, ଆମର ଏ ଅଣ୍ଡି-ଟୋକା ହଲକ ଯାହା ହଉଛନ୍ତି ତ ଦେଖୁଛ । ଏମାନେ ଆମର ଏ ଆଦର୍ଶକୁ ସ୍ୱୀକାର କରିବେ ବୋଲି ମୋର ବିଶ୍ୱାସ ହଉନି । ତାଙ୍କର ଦୋଷ କ'ଣ ? ସମାଜଟା ସେୟା ହୋଇଯାଇଛି । ପାଖରେ ଯେତେବେଳେ ପଇସା ଅଛି, ନିଜ କାମ ନିଜେ କରିବା କ'ଣ ଦରକାର ? ନିଜର ପୁଣି ମାନସମ୍ମାନ ଅଛି ନା ? ଦେଖୁନ, ପ୍ରାୟ

ପ୍ରାୟ ଦୁଇ ଘଣ୍ଟା ହେଲାଣି, ଛେଳିଗୁଡ଼ା ବନ୍ଧା ହୋଇଛନ୍ତି—କାହାରି ଦେଖା ନାହିଁ । ଶଳା, ଧନ୍ୟ କହିବ ଏମାନଙ୍କୁ ।

ଠିକ୍ ଏତିକିବେଳେ କଳା ମଚମଚ, ଡେଙ୍ଗା ଲୋକଟାଏ ବଡ଼ ଛେଳିର ବେକରୁ ଦଉଡ଼ି ଖୋଲିବାକୁ ଆରମ୍ଭ କଲା । ଆମ ଆଡ଼କୁ ଜମାରୁ ଅନାଇ ନାହିଁ । ମୁହଁରେ ତା'ର ରାଗିଲା ରାଗିଲା ଭାବ ।

ବାପା ବାଡ଼ ପାଖକୁ ଯାଇ ତାଙ୍କୁ ପଚାରିଲେ—ହଇଓ ବାବୁ, ଏ ଛେଳିଗୁଡ଼ାକ ତମର, ନା ଆଉ କାହାର ?

ବାପାଙ୍କ କଥାର ସେ ଉତ୍ତର ଦେଲାନି । ଯେମିତି କାଲଟାଏ, କିଛି ଶୁଣିପାରୁନି ।

ବାପା ବିରକ୍ତ ହୋଇ ପୁଣି ପଚାରିଲେ—ହଇଓ ବାବୁ, ତମକୁ କ'ଣ ପଚାରୁଛି ପରା । ଶୁଭୁନି ନା କ'ଣ ? ଏମାନେ ତମରଟି ? ମେଲା ଛାଡ଼ ଦଉଚ କ'ଣ ପାଇଁ ?

ଛେଳିଟାର ଦଉଡ଼ି ଗଛଟାରେ ଗୁଡ଼େଇ ହୋଇଯାଇଥିଲା । ସେ ଖୋଲୁ ଖୋଲୁ କହିଲା—ତମେ ଏମାନଙ୍କୁ କ'ଣ ପେଇଁ ବାନ୍ଧିଛ ?

ବାପା ରାଗିଯାଇ କହିଲେ—ଶଳା, ବିଚିତ୍ର କଥା । ମୋ ବାଡ଼ରେ ପଶି ଫସଲ ଉଜାଡ଼ିଲେ । ବାନ୍ଧିଲି । ଦୋଷ ହେଲା ।

ସେ ଲୋକଟା ଚଡ଼ାଗଳାରେ କହିଲା—କାଞ୍ଜିଆହାଉଦା ନେଇଗଲାନି । ନିଜେ କାହିଁକି ବାନ୍ଧି ରଖିଛ କି ? ଇଏ କୋଉ ଭଦ୍ରଲୋକ ?

ତା' କଥା ଶୁଣି ବାପା ବିଚିତ୍ର ଭାବରେ ହସିଲେ । କହିଲେ—ଶଳା ଦୁନିଆଟା କ'ଣ ଏଇୟା ? ଫସଲ ନଷ୍ଟକଲେ । ଏମାନଙ୍କୁ ବାନ୍ଧି ପରିବାରଟାଯାକ ଖରାବେଳଟାରେ ଡେଉଁଚୁ । ଶଗଡ଼େ ଡାଳପତ୍ର ଗଦା କଲୁଣି । ଖାଇକରି ପେଟ ଟୁଂ କରିଛନ୍ତି । ଖରାରେ ଧକଉଥିଲେ— ପାଣି ବି ପିଆଇଲୁ । ଶୋଷରେ ଆଉଟିପାଉଟି ହଉଥାନ୍ତେ । ସାନପୁଅଟା କାନ୍ଦୁଛି ଯେ, ଏ ପର୍ଯ୍ୟନ୍ତ ଅଖିଆଅପିଆ ପଡ଼ିଛି । ଆଉ ଏ ହାରାମି କହୁଛି କ'ଣ ନା କାଞ୍ଜିହାଉଦାରେ ପୂରେଇ ଦେଲାନି । ଫସଲ ଉଜାଡ଼ ପୁଣି ନାଲିଆଖି । ବଦ୍‌ମାସ୍ କୋଉଠିକାର । ବର୍ବର, ଅସଭ୍ୟ ।

ବାପାଙ୍କ କଥା ଶୁଣି ସେ ଲୋକଟା ଆଗପଟରୁ ଖିଙ୍କାରିଉଠିଲା । କହିଲା—ବଦମାସ୍ , ଅସଭ୍ୟ କ'ଣ କହୁଛ ?

ବାପା ତ ସେତେବେଳକୁ ରାଗିକି ନିଆଁ ହୋଇଗଲେଣି । ଥରୁଥାନ୍ତି । ଏତେବଡ଼ ପାଟିକରି କହିଲେ—ଆଉ କ'ଣ ତମକୁ ପୂଜା କରିବୁ ? ଶଳା ଚୋରଙ୍କୁ ନୁହଁ, ତମମାନଙ୍କୁ ବାନ୍ଧିକରି ପିଟିବା କଥା । ଜନ୍ତୁଗୁଡ଼ାକୁ ବାନ୍ଧି ମୁଁ ଭୁଲ୍ କରିଛି । ମଦୁଆଗୁଡ଼ାକ ଖାଇବାକୁ ପାଉନାହାନ୍ତି । କାଞ୍ଜି ହାଉଦାରେ ପୂରେଇ ଦେଇଥିଲେ ନୋଟ୍‌ଗୁଡ଼ାକ ଗଣିପକେଇଥାନ୍ତେ ? ଏମାନଙ୍କୁ ଭଦ୍ରଭାବରେ କହିଲେ—ଓଲଟି ଚଡ଼ୁଛନ୍ତି । ଯୁଗ ତ ସେୟା ହେଲା, ତମେମାନେ କ'ଣ କରିବ ?

—କ'ଣ ସେମିତି କହୁଛନ୍ତି ? ଆମେ ମଦୁଆ, ମାଡ଼ୁଆ । ବାଡ଼େଇଲେ ବାଡ଼ାନ୍ତୁ । ପାଞ୍ଚଜଣଙ୍କୁ ଡାକି ପଚାରନ୍ତୁ । କାହାର ଭୁଲ୍ । କ'ଣ ପାଇଁ ତମେ ମୋ ଛେଳିଗୁଡ଼ାଙ୍କୁ ବାନ୍ଧିଥିଲ ? ଆଗ କଥା ପଡ଼ୁ, ତା'ପରେ ଯୋଉ କଥା ।

ତା କଥା ଶୁଣି ବାପା ରାଗରେ ଖାଲି ଥରୁଥାନ୍ତି । ମା ତାଙ୍କ ପାଖକୁ ଯାଇ କହିଲା—ତମେ ସେ ଛୋଟଲୋକଗୁଡ଼ାଙ୍କ ସାଙ୍ଗରେ ପାଟିକରି କାହିଁକି ଇଜ୍ଜତ ହରାଉଛ କହିଲ ? ସେ ତା ଛେଳି ନେଇଯାଉ । ତମେ ଘର ଭିତରକୁ ଚାଲ । ଚାଲିଲ ଆଗ, ମୋ ରାଣ । ଯେ ଯୁଗ ତ ସେୟା । ତମେ ସେମାନଙ୍କୁ କାହିଁକି ଦୋଷ ଦଉଛ ?

—ଏମାନଙ୍କୁ ଦେଖି ଆଶ୍ଚର୍ଯ୍ୟ ଲାଗୁଛି । ଏତେ ଅଭଦ୍ର ଯେ, ନିଜ ଭୁଲ୍ ମାନିବାଲାଗି ପ୍ରସ୍ତୁତ ନୁହଁନ୍ତି । ବିଚିତ୍ର କଥା । ଏତେ ଖରାପ, ବାଜେ ଲୋକ ମୁଁ ଜୀବନରେ ଦେଖିନି ।

—ତମେ ଏ ଛୋଟଲୋକମାନଙ୍କ ପାଖରୁ ଅଧିକ ଆଶା କରିବା ଭଲ ନୁହେଁ । ଆଶା କଲେ କଷ୍ଟ ପାଇବ । ଚାଲ, ଘର ଭିତରକୁ ଚାଲିଲ ।

ବାଡ଼ ସେପଟରେ ଛେଳିଙ୍କୁ ନେଇ ଚାଲିଯାଉଥିବା ଲୋକଟା ଟିକିଏ ଅଟକିଯାଇ କହିଲା—କ'ଣ ସେମିତି କଥା ସବୁ କହୁଛନ୍ତି ?

ବାପା ଚଡ଼ାଗଳାରେ କହିଲେ—ଭଲରେ ଭଲରେ ଚାଲିଯାଅ କହୁଛି, ତମକୁ ମାଡ଼ ଦବା କଥା । ଆମେ ବୋଲି ଛାଡ଼ିଦେଲୁ । ବୁଝିଲ ।

—ତମେ କାହିଁକି ମୋ ଛେଳି ବାନ୍ଧୁଥିଲ କଓ ? କମ୍ ସାହସ ନୁହଁ ତ । ଖାଲି ବଡ଼ି ବଡ଼ି କଥା କହୁଛ । ହଁ ।

—କାହିଁକି ବୁଝିପାରୁନ । ବୁଝେଇଦେବ ? ଅନ୍ଧ ହୋଇଛ । ଫସଲ କିଆରିକୁ ଦେଖିପାରୁନ ।

—ତମେ କାହିଁକି ଫସଲ କରଛ ?

ତା କଥା ଶୁଣି ବାପା ଜୋରରେ ହସି ପକେଇଲେ । କହିଲେ, ଶଳା ବଡଲୋକ ଲୋକ । ଫସଲ କରିବା ମୋର ଦୋଷ ହେଲା । ମତେ ଉପଦେଶ ଦେଉଛି—ଏଗୁଡ଼ାକ ଖରାପ କାମ । ତମେ ବାବୁ ଗଲ ଏଠୁ । ଶୀଘ୍ର ଯା କହୁଛି । ଛେଳ ଯଦି ଆଉ କେଉଁଦିନ ଏଠିକି ଆସିଛନ୍ତି, ତା'ହେଲେ ଦେଖିବ । ତମକୁ ଆଗ ବାନ୍ଧି ବାଡ଼େଇବି । ତା ପରେ ଯୋଉ କଥା । ମନେ ରଖିଥା ।

ଲୋକଟା ଛେଳି ତିନଟାକୁ ଟାଣି ଟାଣି ନଉଥାଏ । ଆଉ କହୁଥାଏ—କୋଉଠୁ ଆସିଛନ୍ତି ଲୋଭୀ କଟକିଆଗୁଡ଼ାକ, ଏଠି ଆମ ଗାଇଜରେ ଦାଦାଗିରି କରୁଛନ୍ତି । ଘଇତାମାଇପ ଦିଇଜଣ ଚାକିରି କରିଛନ୍ତି—ଟଙ୍କା କୁଲୋଉନି ଯେ ଶାଗ, ଲଙ୍କା, ବାଇଗଣ ଲଗେଇଛନ୍ତି । ଲାଜ ଲାଗୁନି—ଦଣ୍ଡାରୁ ରାସ୍ତାରୁ ଗୋବର ଗୋଟାଉଛନ୍ତି, ଗ୍ରେଟଲୋକଗୁଡ଼ାକ । ବ୍ରାହ୍ମଣ ନା ମୋଚି ? ଏତେ ପଇସା କମେଇ ଆଉରି ଲୋଭ ? ପେଟ ପୋଡ଼ଯାଉଛି—ଶାଗ, ବାଇଗଣ, ଲଙ୍କା, କଦଳୀ କିଣିକରି ଖାଉନି । ନାଇଁ, ପଇସା କାଇଁକି ପରକୁ ଦେବେ ? ତମେ ମୋର କ'ଣ ଓପାଡ଼ିବ ଦେଖିବି ।

—ହଇରେ କ'ଣ ଦେଖିବୁ ? ତୋର ବହୁତ ହେଉଛିନା ? ରହ ଯାଉଛି । ରହ, ଠିଆ ହଅ । ଏତିକି କହି ବାପା ଧାଇଁଗଲେ ତା ଆଡ଼କୁ । ଯେମିତି ପାଗଳ ହେଇଯାଇଥିଲେ ।

ମା' ତାଙ୍କୁ ଚଟ୍‌କିନା ଧରି ପକେଇଲା । ଆମ ପାଟି ଶୁଣି ପାଖ ପାଖ କଲୋନୀର ଲୋକେ ପଦାରେ ଠିଆ ହେଇଗଲେ ।

ମା' କହିଲା—ସେ ଗ୍ରେଟଲୋକଗୁଡ଼ାକ ସାଙ୍ଗରେ ପାଟି କଲେ ଇଜ୍ଜତ ଯିବନା । ମୁଁ ପ୍ରଥମରୁ ମନାକରୁଛି—ସେମାନେ ଭାରି ଖରାପ ଲୋକ । ସେମାନଙ୍କ ସାଙ୍ଗରେ ପାଟି କରନା । କଥା ମାନିଲନି, ଫଳ ପାଇଲ । ଘର ଭିତରକୁ ଚାଲ ।

ବାପା ସୁନାପିଲାଟି ପରି ଯାଇ ଚୁପ୍‌ଚାପ୍ ପିଣ୍ଡାରେ ବସିପଡ଼ିଲେ ।

ଟୁଲୁ ଘାରବରେ ଠିଆ ହେଇଥାଏ । ପାଟି ଶୁଣି ଥରୁଥାଏ ଗୋଟାପଣେ ।

ବାପା ମା'ଙ୍କୁ କହିଲେ—ଦିଅ ସେଇଟାକୁ ଖାଇବାକୁ ଦିଅ । ତା ବାପ୍ରାଣ୍ଲିରସ ଶୁଖିଗଲାଣି । ଧନ୍ୟ ଜହ୍ନିବ ଏ ସମାଜକୁ, ନଲଠାମାନଙ୍କୁ । ବିବେକକୁ ବିକ ସାରିଲେଣି ।

ତା କୁନି ଟେତ୍ରରେ ସବୁ ଜିନିଷ ବଢ଼ା ହୋଇଥିଲା । ମା' ଆଣି ତା ଆଗରେ ଥୋଇଦେଲା । କାହାକୁ କିଛି ନ କହି ସୁଧାର ପିଲାଟିଏ ପରି ମୁହଁହାତ ଧୋଇ ସେ ଖାଇବସିଲା । ମା'ଙ୍କୁ ବି ଖୁଆଇଦବାକୁ ଡାକିଲାନି ।

ବାପାଙ୍କ ଉପରେ ମୋର ଭାରି ରାଗ ହେଲା । ମନେ ମନେ କହିଲି— ଶାଗ, ଲଙ୍କା, ବାଇଗଣ ଏଥର ଭଲକରି ଖାଉଥାଅ । ଗୋବର ଗୋଟାଅ, ହାଣ, ଗଛ ଲଗାଅ । ମା' ପାଣି ଦଉ । ଛି ।

ବେଶୀ ରାଗ ଲାଗିଲା—ସେ କଳା ମଚମଚ ଲୋକଟା ଉପରେ । ମଦ ପିଇ ନାଲି ନାଲି ଆଖି କରିଥିଲାଲେ ବୋପା । ଭାରି ଖରାପ ଲୋକଟା । ଛି ।

ବାପା କାହାକୁ କିଛି ନ କହି ଅନେକ ସମୟ ଚେୟାର ଉପରେ ଗୁମ୍‌ମାରି ବସିରହିଲେ ଏବଂ ମା'ଙ୍କୁ କହିଲେ ଗୀ' କରିବାଲାଗି ।

ଗୀ' ଯେମିତି ତାଙ୍କ ରୋଗର ଔଷଧ ।

## ।। ଏଗାର ।।

ଜୀବନରେ ଏତେ ମାଡ଼ ମୁଁ କେବେ ଖାଇ ନ ଥିଲି । ଗାଈଗୋରୁଙ୍କ ପରି ବାପା ମତେ ମନଇଚ୍ଛା ପିଟି ଦେଇଗଲେ । ବୋଉ ଥିଲା ବୋଲି ରକ୍ଷା ପାଇଗଲି । ନଇଲେ ମୋ ପ୍ରାଣ ରହି ନ ଥାନ୍ତା ।

ମୁଁ ଯାହା କଲି, ଏଥିପାଇଁ ଅବଶ୍ୟ ମାଡ଼ ଖାଇବା କଥା । ମାତ୍ର ମୁଁ ତ ଆଉ ଜାଣିଶୁଣି କରିନି । ଯାହା ମନହେଲା ସାଙ୍ଗେ ସାଙ୍ଗେ କରିଦେଲି । ଆଉ କ'ଣ କରିଥାନ୍ତି ? କରୁ କରୁ କରି ହୋଇଯାଉଛି । କାମ ସରିଗଲା ପରେ ବାପାଙ୍କ କଥା ମନେପଡୁଛି । ବାପା କି ମା' ଜାଣିଗଲା ପରେ ମାଡ଼ । ମୋ ପିଠିତ ସେମାନଙ୍କ ପାଇଁ ସତେ ଯେମିତି ଗୋଚର ଭୂଇଁ ।

ସେମାନେ ଖାଲି ସବୁବେଳେ କହୁଥିବେ—ବାପାରେ ଏ କାମ କରିବୁନି, ସେ କାମ କରିବୁନି । ଇଏ ଭଲ କାମ, ସିଏ ଖରାପ କାମ । ଏ କାମ

କଲେ ଯୁଆ ହବ, ସେ କାମ କଲେ ସେମ୍ଭା ହବ । କେତେ ଏବେ ସେଇକଥା ଖାଲି ଶୁଣୁଥିବ ।

ତେବେ ମୁଁ ଯାହାସବୁ କରେ ବାପାମା' ସେମାନଙ୍କ ସାଙ୍ଗ ଓ ଅନ୍ୟମାନଙ୍କ ଆଗରେ କହ ହସି ହସି ଗଡ଼ିଯାନ୍ତି । ମୋ କଥାଗୁଡ଼ାକ ଯଦି ଖରାପ, ସେମାନେ କାଇଁକି ଯେ ଏତେ ହସନ୍ତି ମୁଁ ବୁଝିପାରେନା । ହସିବା ମାନେ ତ ପ୍ରଶଂସା କରିବା । ଏଣେ ହସିବେ, ତେଣେ ମାରିବେ । ଇଏ କି କଥା ?

ମୁଁ ସେତେବେଳେ ତୃତୀୟ ଶ୍ରେଣୀରେ ପଢ଼ୁଥାଏ । ଆମ କ୍ଲାସ୍‌ରେ ସମସ୍ତଙ୍କଠାରୁ ମୁଁ ବୟସରେ ସାନ । ମାତ୍ର ଦେଖିବାକୁ ବଡ଼ । ଯେତିକି ଡେଙ୍ଗା । ଠିକ୍ ବାପାଙ୍କ ଭଳିଆ । ମତେ ସମସ୍ତଙ୍କ ଆଗରେ ବସିବାକୁ ଭଲ ଲାଗେ । ଏଣେ କ୍ଲାସ୍‌ରେ ଫାଷ୍ଟ୍ ହୁଏ ବୋଲି ସାର୍ ବି ପ୍ରଥମ ଧାଡ଼ିରେ ବସିବାକୁ କହନ୍ତି । ଭଲ ପିଲମାନେ ଆଉ କ'ଣ ପଛରେ ବସିବେ କି ? ସାର୍ ପଢ଼ୋଉଥିଲାବେଳେ ମୁଁ ବୁଲିପଡ଼ି କାହାର ଚୁଟି ଟାଣିଦିଏ, କାହାକୁ ଚିମୁଟି-ଦିଏ । ସାଙ୍ଗେ ସାଙ୍ଗେ ସେମାନେ ଠିଆ ହୋଇପଡ଼ି କହନ୍ତି—ସାର୍, ଲିଟୁ ଆମ ଚୁଟି ଟାଣୁଛି, ମାରୁଛି, ଚିମୁଟୁଛି, ପେଲିଦଉଛି—ଏମିତି କେତେ କଥା । ମୁଁ ଏମିତି କାଇଦାରେ ଏସବୁ କାମ କରେ, ସାର୍ ଦେଖିପାରନ୍ତିନି ।

ସାଙ୍ଗମାନଙ୍କ କଥାରେ ସାର୍ ମତେ ଏକ ଗୋଡ଼କିଆ ଠିଆ କରାନ୍ତି । ଗାଳି ଦିଅନ୍ତି । ବେଳେବେଳେ ଗୁଟିଆରେ ପାହାରେ ଦିଇ ପାହାରେ ପକାନ୍ତି । କାନ ମୋଡ଼ି ଦିଅନ୍ତି । ତେବେ ମାଡ଼ଟା ଏତେ ଜୋର ହୁଏନା । ବେଶୀ ରାଗିଗଲେ, ମତେ ନେଇ ପଛରେ ବସେଇଦିଅନ୍ତି । ହେଲେ ସମସ୍ତଙ୍କ ପଛରେ ବସି ପାଠ ଶୁଣିବାକୁ ମତେ ଜମାରୁ ଭଲଲାଗେନା । ଅବଶ୍ୟ ପଛରେ ବସିଲେ ପାଟି କରିବା, ଚୁଟି ଟାଣିବା କାମଟା ସହଜ ଯେ, ମାତ୍ର କେଜାଣି କାଇଁକି ମତେ ତ ଆରାଏନା, ଆଉ କ'ଣ କରିବ । ଆଗକୁ ଆସିବାକୁ ଖାଲି ଛଟପଟ୍ ହଉଥାଏ । ସାର୍ ଯେମିତି କଳାପଟା ଆଡ଼କୁ ମୁହଁ ବୁଲାନ୍ତି—ମୁଁ ଆସ୍ତେକିନା ଆଗକୁ ପଳେଇଆସେ । ସେ ପଛକୁ ଗୁହିଁ ମତେ ଖୋଜିଲାବେଳକୁ ଆଉ କୋଉ ଥାଏ ଯେ ପାଇବେ । "ଲିଟୁ କୁଆଡ଼େ ଗଲା" ବୋଲି ପଚାରିବାମାତ୍ରେ ମୁଁ ସାଙ୍ଗେ ସାଙ୍ଗେ ଠିଆ ହୋଇପଡ଼େ । ସାର୍ ପ୍ରଥମେ ରାଗନ୍ତି

ଆଉ ତା'ପରେ ହସନ୍ତି । ମତେ ଦିନେ ରାଗିକି କହିଲେ—ଯଦି ତୁ ଆଉ ବେଶୀ ବଦମାସି କରିବୁ, ତତେ ନେଇ ପ୍ରଥମ ଶ୍ରେଣୀରେ ବସେଇଦେବି ।

ସତକୁ ସତ ସାର୍ ମତେ ନେଇ ଦ୍ୱିତୀୟ ଶ୍ରେଣୀରେ ବସେଇଦେଲେ । ଆମେ ତିନି ଶ୍ରେଣୀର ପିଲାମାନେ ଗୋଟାଏ ଘରେ ବସୁଥିଲୁ । ସ୍କୁଲରେ ସାର୍ ଦୁଇଜଣ, ଘର ଗୋଟାଏ । ତିନି ଶ୍ରେଣୀର ପିଲାମାନେ ତିନିଟା ଆଡ଼କୁ ମୁହଁ କରିଥାଉ । ସାର୍ ଯେମିତି ପଢ଼େଇବା ଆରମ୍ଭ କରିଛନ୍ତି ମୁଁ ଗାଣ୍ଡେଇ ଗାଣ୍ଡେଇକା ଆମ କ୍ଲାସ୍‌ର ପଛଧାଡ଼ିକି ଚାଲିଆସିଲି । ଆଉ ଯେମିତି ସେ କଳାପଟା ଆଡ଼କୁ ଚାହିଁଛନ୍ତି, ମୁଁ ଚଟ୍‌କିନା ମୋ ଜାଗାକୁ ଉଠି ପଳେଇ-ଆସିଲି । ମୁଁ ଏମିତି କରୁଥିବାର ଦେଖି ପିଲାମାନେ ହସିଲେ । ସାର୍ ତ ଆମର ଭାରି ରାଗୀ । ବୁଲିପଡ଼ି କହିଲେ—କାଇଁକି ଖୋ ଖୋ ହଉଚ, ବାଡ଼େଇକି ପିଠିରୁ ଚମଡ଼ା ଉତାରିଦେବି, ବଜାଖି କାହିଁକା । କୁକୁରଛୁଆ, ଘୁଷୁରିଛୁଆଗୁଡ଼ାକ କୋଉଠୁ ଆସିଛନ୍ତି । ସମସ୍ତେ ଠିଆହୁଅ ଏକଗୋଡ଼ିକିଆ । କାନ ଧର । ପାଠ ପଢ଼େଇଲାବେଳେ ପାଟି, ହସ ।

ଆମେମାନେ ଯେମିତି ଠିଆ ହେଇପଡ଼ିଛୁ, ମୁଁ ତ ତେଙ୍ଗାଟା, ପ୍ରଥମେ ତାଙ୍କ ଆଖି ପଡ଼ିଗଲା ମୋ ଉପରେ । କହିଲେ—ହଇରେ ବାଳୁଙ୍ଗା, ତତେ ତ ସେଠି ବସିବାକୁ କହିଥିଲି, ଏଠିକି କେତେବେଳେ ଆସିଲୁ, ଆଏଁ ? ବଦମାସ୍ । ତୁ ଠିଆହେଇଥା । ଅନ୍ୟମାନେ ସବୁ ବସିପଡ଼ । ବସ ।

ସମସ୍ତେ ବସିପଡ଼ିଲା ପରେ ମତେ ପୁଣି କହିଲେ—ଦଶଥର ଉଠ୍‌ବସ୍ ହେଇ ବସ । ଆଉ ଚଗଲାମି କରିବୁନି । ଏଥର ଯେମିତି କଲେ ପାଠପଢ଼ା ବନ୍ଦ ।

ମୁଁ ସାର୍‌ଙ୍କ ଆଦେଶ ପାଳନ କଲି ।

ମାତ୍ର ବୁଝିପାରୁନି, ମୋର ଭୁଲ୍ କ'ଣ ହେଲା । ଏ ଶ୍ରେଣୀରୁ ସେ ଶ୍ରେଣୀକୁ ଗାଣ୍ଡେଇ ଗାଣ୍ଡେଇ ଉଠି ଆସିବା କ'ଣ ଖରାପ କାମ । ସମସ୍ତେ ତ ଗୋଟାଏ ଘରେ ବସୁ । ସାର୍‌ଙ୍କ ଇଚ୍ଛାହେଲେ ପଢ଼ୁ, ନ ହେଲେ ଖେଳୁ । ସେ କେତେବେଳେ ପଢ଼ଉଥାନ୍ତି ତ କେତେବେଳେ ଢୁଳୋଉଥାନ୍ତି । କେତେବେଳେ ଟେବୁଲ ଉପରେ ଗୋଡ଼ ଥୋଇ ଦେଇ ଶୋଇପଡ଼ନ୍ତି । କିଏ ଆସି ଡାକିଲେ, ତାଙ୍କ ସାଙ୍ଗରେ ଘଣ୍ଟା ଘଣ୍ଟା ଧରି ଗପନ୍ତି । ଯେତେବେଳେ ମନହେଲା, ଗୁଆପାନ ଖାଇବାକୁ ପଳେଇଯାନ୍ତି । ମତେ ବି ବେଳେବେଳେ

ଘାନଘାଇଁ ଘଠାନ୍ତି । କୋଉଦିନ ଏଗାରଟା ବାରଟା ବେଳକୁ ଆସନ୍ତି, ପୁଣି ପଳେଇଯାନ୍ତି ତିନିଟାବେଳକୁ । ଆମେମାନେ ଆଉ କ'ଣ କରନ୍ତୁ ଯେ ? ମୁଁ ତ କ୍ଲାସ୍‌ର ପ୍ରଧାନମନ୍ତ୍ରୀ । କୁଆଡ଼େ ଗଲେ, ପିଲମାନଙ୍କୁ ଜଗିବାପାଇଁ ମତେ କହିଯାନ୍ତି । ଦୁଷ୍ଟ ପିଲମାନଙ୍କ ନାଁ ଟିପିରଖିବା ମୋର ପ୍ରଧାନ କାମ । ମୁଁ ତ ସମସ୍ତଙ୍କୁ ଚୂପ୍ ଦବେଇକରି ରଖିଥାଏ । ମୁଁ ଚଗଲମି କଲେ, ସେମାନେ ସାର୍‌ଙ୍କ ଆଗରେ କିଛି କହିପାରନ୍ତିନି । ମତେ ଭୟ । ଟିକିଏ ସୁଯୋଗ ପାଇଲେ, ମୁଁ କାହା ଚୁଟି ଟାଣିଦିଏ । କାହାକୁ ଧୂଳିଆଜଦା କାମୁଡ଼ିଲ ପରି ରୁଟ୍‌କିନା ଚିମୁଟିଦିଏ । କାହା କାହାର କଲ ଟାଣି କଲିକତା ଦେଖେଇଦିଏ । ଆଲପିନ୍‌ରେ କାହାକୁ ଟିକିଏ ଫୋଡ଼ିଦିଏ । ବସିଥିଲାବେଳେ କାହା ଉପରେ ଜୋରରେ ଆଉଜିପଡ଼େ । ବେଳେବେଳେ କାହା ଗାଣ୍ଡିରେ ସଟ୍ ମାରିଦିଏ । ଆଗରେ ଥିବା ପିଲର ଗୋଡ଼ ଏମିତି କାଇଦାରେ ଛନ୍ଦିଦିଏ ଯେ, ଦିଇଜଣ-ଯାକ ପଡ଼ିଯାଉ । ଧାର୍ ପଢ଼ୋଉଥିଲବେଳେ ବଡ଼ପାସ୍, ସାନପାସ୍ କହି ବାହାରେ ଯାଇ ଟିକିଏ ବୁଲିଆସେ । ସ୍କୁଲ୍‌ହତାର ବେଲ, ବର, ଜାମୁ, କଯ଼ାଁ ଗଛରେ ଚଢ଼ି ଫଳ ତୋଳେ । ଏସବୁ କ'ଣ ଖରାପ କାମ ? ସାର୍ ଆଉ ବାପାମା' କେମିତି ବୁଝିପାରୁ ନାହାନ୍ତି ଯେ, ପିଲମାନେ ଏସବୁ କାମ କରନ୍ତି ବୋଲି । ସାନ ପିଲମାନଙ୍କ ମନକଥା ତ ବୁଝିପାରୁ ନାହାନ୍ତି, ଆଉ କି ବଡ଼ଲୋକ ହେଇଛନ୍ତି ? ଛି । ସେମାନଙ୍କ ଉପରେ ମୋର ଭାରି ରାଗ ହୁଏ ।

ଭୁଷ୍ମପୁରେ ପଢ଼ିଲାବେଳେ ସିନା ଚଗଲ ହେଉଥିଲି । ଏବେ କ'ଣ ଆଉ ସେସବୁ କାମ କରୁଛି କି ? ମୁଁ ତ ବହୁତ ଭଲ ହେଇଗଲିଣି ବୋଲି ସାର୍ କହୁଥିଲେ ।

ନାକବାଳ କାଟିବାପାଇଁ ପଅରଦିନ ବାପା ଗୋଟାଏ ଚୁଇଁ କଇଁଚିଟିଏ ଆଣିଥିଲେ । ଚୁଇଁ ଚୁଇଁ ଜିନିଷ ଦେଖିବାପାଇଁ ମତେ ଭାରି ଭଲ ଲାଗେ । ବାପା ମା' ନ ଥିଲାବେଳେ କଇଁଚିରେ କାଗଜଫୁଲ କାଟିଲି । କ'ଣ ମନହେଲା କେଜାଣି ବ୍ୟାଗ୍‌ରେ ପୂରେଇ ସ୍କୁଲକୁ ନେଇଆସିଲି । ସେମାନଙ୍କୁ ମାଗିଥିଲେ ଆଉ କ'ଣ ଦେଇଥାନ୍ତେ କି ? ଓଲଟି ମାଡ଼ ହେଇଥାନ୍ତା । ସବୁଦିନ ପରି ସେଦିନ ଆଉ ଆଗ ବେଞ୍ଚରେ ବସିଲିନି । ବସିଲି ଝିଅପିଲ-ମାନଙ୍କର ପଛ ବେଞ୍ଚରେ । ସାର୍ ପଢ଼ୋଉଥିଲବେଳେ ମିତାଲି, ମାମିନା, ଟୁଇଁକଲ୍‌ର ଲମ୍ବା ବାଳରୁ ପୁଳାଏ ପୁଳାଏ କାଟି ପକେଇଲି । ଏଡ଼େ

ଟିକି ଟିକି ପିଲା, ବଡ଼ ଝିଅଙ୍କ ପରି ବାଳ ଏତେ ଲମ୍ବା ଲମ୍ବା କରିଛନ୍ତି । ପୁଣି କ'ଣ ମନହେଲା କେଜାଣି ପଛ ଡେସ୍କକୁ ଆଉଜିପଡ଼ି, ହାତବୁଲେଇ ପିଣ୍ଟୁର ଆଉ ମଲୁରୁର ମୁଣ୍ଡରୁ କେଇପୁଳା ବାଳ କାଟି ପକେଇଲି । ମଲୁରୁ ସାଙ୍ଗରେ ମୋର ଜମା ପଡ଼େନା । ମତେ ମାଡ଼ଗାଳି ଖୁଆଇବା ବାଟରେ ସେ ସବୁବେଳେ ଥାଏ । କ'ଣ ଟିକିଏ କରିଦେଲେ, ଚନ୍ଦ୍ରକଳା ସାରଙ୍କୁ କହିଦିଏ । ମୁଁ ବାଳ କାଟି ପକେଇଛି ବୋଲି ଯେମିତି ସେ ଦେଖିଛି, ସାଙ୍ଗେ ସାଙ୍ଗେ ଠିଆ ହେଇପଡ଼ି କହିଲା—ସାର, କଇଁଚ ଆଣିଚ ଲିଟୁ ଆମ ବାଳସବୁ କାଟି ପକାଉଛି ।

ସାର ତ କଳାପଟା ଆଡ଼କୁ ମୁହଁ ଅଙ୍କ କଷୁଥିଲେ । ଯେମିତି ପଛରୁ ପାଟି ଶୁଭିଲା, ଚନ୍ଦ୍ରକର ପଛକୁ ବୁଲିପଡ଼ି ପଚାରିଲେ—କିଏ ଭଡ଼ଭଡ଼ ହଉଛି । ଖୋଜୁଛ ମାଡ଼ ନା ? ଚୁପ ବସୁଛ । କିଏ ଅଙ୍କ ବୁଝିପାରୁନ ? କିଏ ? ଠିଆ ହୁଅ । ମୁଣ୍ଡରେ ତ ସବୁ ମଣିଷ ଗୋବର ପୂରେଇଛନା । ଠିଆ ହୁଅ ।

ତାଙ୍କ ରାଗ ଦେଖି କେହି ଠିଆ ହେଲେନି । ମତେ ପଚାରିଲେ—ଲିଟୁ ଠିଆ ହଅ କ'ଣ ବୁଝିପାରିଲୁ ?

ମୁଁ ସାଙ୍ଗେ ସାଙ୍ଗେ ଠିଆ ହେଇପଡ଼ି କହିଲି—'ହଁ ସାର' ।

"ସିଏ ବୁଝୁଛି । ଏ ବାବୁମାନେ ବୁଝିପାରୁ ନାହାନ୍ତି । ମୁଁ ଯାହା ଲେଖିଛି ସବୁ ଟିପିନିଅ । ପରେ ଲିଟୁ ପାଖରୁ ବୁଝିନବ । ତମ ସାଙ୍ଗରେ ଏତେ ବକ୍ ବକ୍ ହେଇପାରିବିନି । ଆଉ ଭୁଟ୍ଟୁ ଭୁଟ୍ଟୁ ହେଲେ ବାହାରେ ଖରାରେ ନେଇ ନିଲ୍‌ଡାଉନ୍ କରିଦେବି ।

ମଲୁରୁ ମୋ ନାଁରେ କହୁଥିଲା । ସମସ୍ତେ ଯେମିତି ଗୁଣୁ ଗୁଣୁ ହେଇଛନ୍ତି—ପାଇଲେ ଖୋବଣା । ମୋର ମଜା । ମନେ ମନେ କୁରୁଳି-ଉଠିଲି । ମଲୁରୁକୁ ଖତେଇହେଇ କହିଲି—ହେଇଛି, ପାଇଲୁ ତ । ଯା । ଘିଅ ଖା । ମୋ ନାଁରେ କହିବୁନା ? ରହିଥା ।

ମୋ କଥାଶୁଣି ସେ ରାଗି ନିଆଁ ହେଇଗଲା । ସାର କ୍ଲାସ୍‌ରୁ ଗଲାପରେ, ମୁଁ ଝିଅପୁଅଙ୍କର ବାଳ କାଟିଛି ବୋଲି ହେଡ୍‌ସାରଙ୍କୁ ଯାଇ କହିଦେଲା । ସାଙ୍ଗେ ସାଙ୍ଗେ ମୋତେ ଡକା ହେଲା । ମୁଁ ଡରି ଡରି ଯାଇ ସାରଙ୍କ ପାଖରେ ଠିଆ ହେଲି । ତାଙ୍କ ପାଖରେ ମାଧବ ସାର, ଭୈରବ ସାର ବି ବସିଥିଲେ । ମତେ ବି ଭାରି ଲାଜ ଲାଗିଲା । ମୋ ମାଡ଼ ଦେଖିବାପାଇଁ

ମଲୁରୁ ଓ ଅନ୍ୟ ପିଲମାନେ ଯାଇ ଅଫିସ୍ ଦୁଆରମୁହଁରେ ଡାଟି ଦେଲାପରି ଠିଆ ହେଇଗଲେ ।

ସାର୍ ରାଗିକି କହିଲେ—"ସମସ୍ତେ କାହିଁକି ଏଠିକି ଆସିଲ ? କିଏ କହିଲା କ୍ଲାସ୍‌ରୁ ବାହାରିବାପାଇଁ ? ଯାଉଛ ନା ନାଇଁ ଦେଖିବ ଏଇକ୍ଷିଣା ? ଯା ।" ତାଙ୍କ ଧମକାଣରେ କିଏ କୁଆଡ଼େ ପଳେଇଗଲେ ।

ମତେ ପାଖକୁ ଡାକି ପଚାରିଲେ—ଗୌତମ, ତୁ ଏତେ ଚଗଲା ହଉଚୁ କ'ଣ ପାଇଁ ? ତୋ କଥା ମୁଁ କିଛି ବୁଝିପାରୁନି । ସବୁଦିନେ ତୋ ନାଁରେ ଅଭିଯୋଗ । ତୁ ଆଜି କଲୁରି ଆଣି ବାଳ କାଟୁଥିଲୁ ?

—ମୁଁ ମୁଣ୍ଡଟାଙ୍ଗାର ହଁ କଲି ।

—କାଇଁ କାଟୁଥିଲୁ ? ମଜା ଲାଗୁଥିଲା ?

ମୁଁ ତଳକୁ ମୁହଁପୋତି ଚୁପ୍‌ଚାପ୍ ଠିଆ ହେଲି ।

ସେ ପୁଣି ରାଗିଯାଇ କହିଲେ—କ'ଣ ପଚାରୁଚି ଶୁଭୁନି ? ମୁହଁପୋତି କାଇଁକି ଠିଆ ହେଇଚୁ ? ସୁନାପିଲା । ଦେଖିବୁ ଏଇକ୍ଷିଣା ?

ତାଙ୍କ ମୂର୍ତ୍ତି ଦେଖି ମୋ ପାଟିରୁ କଥା ବାହାରିଲାନି ।

ସେ ମତେ ବୁଝେଇ କହିଲେ—ଦେଖ୍, ଏତେ ଦୁଷ୍ଟାମି ଭଲ ନୁହେଁ । ତୁ ସ୍କୁଲରେ ବଡ଼ ପିଲା । ମନ୍ତ୍ରୀ । ଏମିତି ହବୁନା ? ଏଇଟା ଶେଷଥର । ଆଉ ଯଦି କେବେ ଦୁଷ୍ଟାମି କରୁ, ଦେଖିବୁ । ସ୍କୁଲରୁ ବାହାର କରିଦେବି । ବାପା, ମା'କୁ କହିଦେବି । ଆଉ କ'ଣ କରିବି କହ । ଯା' ।

ମୁଁ ଅଫିସ୍‌ରୁ କୋଉ ବାଟେ ଆସିବି ବାଟ ପାଇଲିନି । ସାର୍ କଲୁରିଟା ନେଇଯିବେ ବୋଲି ଭାବିଥିଲି । ହେଲେ ନେଲେନି । କ୍ଲାସ୍‌ରେ କାହାକୁ କିଛି ନ କହି ଚୁପ୍‌ଚାପ୍ ବସିରହିଲି । ଘରକୁ ଫେରିଲି । କଲୁରି ଯୋଉଠୁ ନେଇଥିଲି, ସେଇଠି ରଖିଦେଲି । ବାପା, ମା' କେହି ଜାଣି-ପାରିଲେନି । ମା'ଟା ତ ସୁଉଦୁ ହୁଣ୍ଡୀ । ବୋକା ।

କୋଉ ସାର କେମିତି ପଢ଼ାନ୍ତି, କେମିତି ଚାଲନ୍ତି, କଥା ହ'ନ୍ତି, ହସନ୍ତି ସେସବୁ ପିଲମାନଙ୍କ ଆଗରେ କରିବାଲାଗି ମତେ ଭାରି ମଜା ଲାଗେ । ସାଙ୍ଗମାନେ ବି ଟେହିଦିଅନ୍ତି । ମୋର ମନହେଲେ କେହି ରୋକିପାରନ୍ତିନି ।

ମୋ କାମ ଆରମ୍ଭ କରିଦିଏ । ଖେଳପଡ଼ିଆ, ବଗିଚା, ରାସ୍ତା, କ୍ଲାସ୍ ଯୋଉଠି ନାଇଁ ସେଠି ମଜା କରେ । ସମସ୍ତେ ହସି ହସି ଗଡ଼ିଯାନ୍ତି । ମୋ ବ୍ୟାଗ୍‌ରେ ସବୁବେଳେ ଡ଼ୁଲାର ନଶ ଆଉ କଲିକତି ଗାମୁଛା ଥାଏ । ଡ଼ୁଲାରେ ଶିରିଷ ଅଠା ମାରି ରଖିଥାଏ । କାମ ଆରମ୍ଭ ଆଗରୁ ସେଥିରେ ଛେପମାରି ନାକରେ ଲଗେଇଦିଏ । ରାଇପିନ୍ ତାଙ୍ଗ ହାତରେ ଧରେ । ଟେବୁଲ୍ ଉପରେ ଥୁଏ । ସାର୍‌ଙ୍କ ପରି କଥା କୁହେ, ଚାଲେ, ଟେବୁଲ୍ ଉପରେ ରାଇପିନ୍ ବାଡ଼ାଏ । ପାଟି ବନ୍ଦ କରିବାକୁ କହେ । ବେଳେବେଳେ ପିଲାମାନଙ୍କୁ ପ୍ରଶ୍ନ ପଚାରେ । କିଏ କହି ନ ପାରିଲେ ମୁଣ୍ଡ, ପିଠି, କାନ୍ଧରେ ବାଡ଼ି ଠୁକେ । ଯାହା ଉପରେ ରାଗ ଥାଏ, ବେଳେବେଳେ ତା ଉପରେ ଜୋରରେ ଦିଇଚାରି ପାହାର ବସେଇଦିଏ । ଧୁଷ୍ଟୁରିଛୁଆ, ବାଲୁଆଛୁଆ, କୁକୁରଛୁଆ, ଗଧ କାହିଁକା ବୋଲି ଗାଳିଦିଏ । ଶେଷରେ ଚେୟାର ଉପରେ ବସି ଗୋଡ଼ ଦିଇଟା ଟେବୁଲ୍ ଉପରେ ରଖିଦିଏ । ମୁଣ୍ଡ ହଲେଇ ଖବରକାଗଜ ପଢ଼େ, ହସେ, କାହାକୁ ପାନ ଆଣିବାକୁ ପଠାଏ ଏବଂ ପଞ୍ଜାବି ପକେଟରୁ ଗାମୁଛା ବାହାର କରି ମୁହଁ ପୋଛେ ।

କାଲି ଟେବୁଲ୍ ଉପରେ ଗୋଡ଼ ଥୋଇ ମନୋଯୋଗ ସହିତ ଖବର-କାଗଜ ପଢ଼ୁଥିଲାବେଳେ, ମୋହନ ସାର୍ ଯେ କେତେବେଳେ ପଶିଆସିଛନ୍ତି, ମୁଁ ଜାଣିପାରିନ । ତାଙ୍କୁ ଦେଖି ପିଲାମାନେ ଧଡ଼ ଧଡ଼ ଠିଆ ହେଇପଡ଼ିଲେ । ମୁଁ ରାଇପିନ୍ ତାଙ୍ଗକୁ ଟେବୁଲ୍‌ରେ ବାଡ଼େଇ କହିଲି—ଆରେ ବସ, କ'ଣ ହେଲା, ଠିଆ ହେଲ କାହିଁକି, ବସ । ବାଳୁଙ୍ଗାଛୁଆ, ଖବରକାଗଜ ବି ପଢ଼େଇ ଦେବେନି । ଧୁଷ୍ଟୁରିପଲ । କୋଉଠୁ ଆସିଛନ୍ତି କେଜାଣି ?

ହଠାତ୍ କେହି ଜଣେ ମୋ ପଛରୁ ଖବରକାଗଜଟା ଆସ୍ତେ୍ଜାନା ଯେମିତି ଉଠେଇନେଇଛି—ମୁଁ ବୁଲିପଡ଼ି ଦେଖିଲି, ସାର୍ । ତାଙ୍କୁ ଦେଖି ମୋ ଦେହ କ'ଣ ହେଇଗଲା । ଚେୟାର ଉପରୁ କୋଉ ବାଟେ ଓହ୍ଲେଇବି ଠଉରେଇ ପାଇଲିନି । ତଳକୁ ମୁହଁପୋତି ଟେବୁଲ୍ ପାଖରେ ଠିଆହେଲି । ଘରି ଲାଜ ଲାଗିଲା । ସାର୍ ବି ମୋ ମୁହଁକୁ ଚାହିଁ ହସିଲେ । ପିଠିରେ ହାତ ଥାପୁଡ଼େଇ କହିଲେ—କ'ଣ ଗୌତମ, ଡ୍ରାମା ଚାଲିଛି । ଚାଲୁ । ଠିଆ ହେଲୁ କାହିଁକି ? ଖୁବ୍ ବଢ଼ିଆ ହଉଛି ।

ମୁଁ କିଛି ବୋଲି କିଛି କହିପାରିଲିନି । ସେ ଦଇ ହାତରେ ମୋ ମୁହଁ ଉପରକୁ ଟେକିଧରି କହିଲେ—ଆରେ ଡରୁଛୁ କାହିଁକି ? ଠିକ୍ ଅଛି । ଭଲ । ସେମିତି ହବା କଥାନା । ଯା, ତୋ ସିଟ୍‌ରେ ବସ । ପଢ଼ା ସରୁ ।

ସୁନାପିଲଟି ପରି ଯାଇ ମୋ ସିଟ୍‌ରେ ବସିଲି । ଚଗଲମି ସିନା କଲିନି, ମାତ୍ର ପଢ଼ାରେ ମନ ଲଗିଲିନି । କ୍ଲାସ୍ ସରିଗଲା ପରେ ସାର୍ ବି କିଛି ନ କହି ଅଫିସ୍ ଗ୍ଭଲିଗଲେ । ଆଉ କୋଉ ସାର୍ କି ପିଲା ହୋଇଥିଲେ, ଭଲ କାଣ୍ଡଟିଏ ହୋଇଥାନ୍ତା ! ବାପାମା' ଲେକ୍‌ଚରର ବୋଲି ସାରମାନେ ମତେ ଟିକିଏ ଭଲପା'ନ୍ତି । ଖେଚଡ଼ ହେଲେ, ଚଳିଯାଏ । ସ୍କୁଲ ଛୁଟି ହେଲାପରେ କାହାକୁ କିଛି ନ କହି ଘରକୁ ପଳେଇଆସିଲି । ଟିକିଏ କ'ଣ କରିଦେଲି ବୋଲି, ଗ୍ରମାୟଣ କ'ଣ ଭୁଲ୍ ହୋଇଗଲା ? ମୁଁ ଖରାପ ପିଲା ହୋଇଗଲି ? ସାର ଏତେକଥା ବୁଝୁଛନ୍ତି, ହେଲେ ବାପାମା' ଜାଣିପାରୁ ନାହାନ୍ତି ? ସେମାନେ ପୁଣି ବଡ଼ ବଡ଼ ପିଲାଙ୍କୁ ପାଠ ପଢ଼ୋଉଛନ୍ତି । କି ପାଠ ପଢ଼ୋଉଛନ୍ତି କେଜାଣି ?

ଆଜି କିନ୍ତୁ ଏ କାମଟା ନ କରିଥିଲେ, ଭଲ ହୋଇଥାନ୍ତା ।

ଫଲାବୋର୍ଡ଼ ପରେ ପରେ ଆମେ କ୍ଲାସ୍‌କୁ ଗଲୁ । ସାର ଯେମିତି ଆସିଲେ ସମସ୍ତେ ଠିଆ ହୋଇପଡ଼ିଲୁ । ମୋର କ'ଣ ମନହେଲା କେଜାଣି, ଗୋଡ଼ରେ ବେଞ୍ଚକୁ ଆସ୍ତେକିନା ପଛକୁ ଘୁଞ୍ଚେଇଦେଲି । ଟିକିଏ ବି ଶବ୍ଦ ହେଲାନି । ସାର ସମସ୍ତଙ୍କୁ ବସିବାକୁ କହିଲେ । ଆମ ବେଞ୍ଚର ପିଲାମାନେ ଯେମିତି ବସିପଡ଼ିଛନ୍ତି, ସମସ୍ତେ ତଳେ ପଡ଼ିଗଲେ, ମୋ ବ୍ୟତୀତ । ମୁଁ ତ ବେଞ୍ଚଟାକୁ ଘୁଞ୍ଚେଇ ଦେଇଥିଲି—କ'ଣ ପଡ଼ିବାକୁ ବସିଥାନ୍ତି ? ଅନ୍ୟ ସାଙ୍ଗମାନେ ପଡ଼ିଯିବାର ଦେଖି ହସି ପକେଇଲି । ମୋ ଦେଖାଦେଖି ଅନ୍ୟମାନେ ବି ହୋହୋ ହୋଇ ହସିଲେ ।

ମାତ୍ର ପିଣ୍ଟୁ ଆଉ ବାବୁଲା ଏତେ ଜୋରରେ କାନ୍ଦି ଉଠିଲେ ଯେ, ଅନ୍ୟ କ୍ଲାସ୍‌ରୁ ସାରମାନେ ଆମ କ୍ଲାସ୍‌କୁ ଧାଇଁ ଆସିଲେ । ପିଲାମାନେ ବି ଗଦା ହୋଇଗଲେ । ପିଣ୍ଟୁର ମୁଣ୍ଡ ଫାଟି ଯାଇଥିଲା । ବାବୁଲାର ହାତଟା ମୋଡ଼ି ହୋଇଯାଇଥିଲା । ସମସ୍ତଙ୍କର କୋଉଠି ନା କୋଉଠି ଆଘାତ ଲାଗିଥିଲା । ସାରମାନେ ସାଙ୍ଗେ ସାଙ୍ଗେ ସେମାନଙ୍କୁ ଡାକ୍ତରଖାନା ନେଇଗଲେ । ମୁଁ ଏ ବଦମାସି କରିଥିଲି ବୋଲି ଧରାପଡ଼ିଗଲି । କଜେ

ପଡ଼ିଯାଇଥିଲେ ଅବଶ୍ୟ କେହି ସହଜରେ ଜାଣିପାରି ନ ଥା’ନ୍ତେ । ତେବେ ମୁଁ କ’ଣ ଜାଣିଥିଲି ଏତେ କାଣ୍ଡ ହେବ ବୋଲି ? ମଜା ହବ ବୋଲି ଗୋଡ଼ରେ ସେମିତି ଟିକିଏ କରି ଦେଇଥିଲିନା ।

ହେଡ୍‌ସାର୍ ମତେ ଅଫିସ୍ ଆଗରେ ନିଲ୍‌ଡାଉନ୍ କରିଦେଲେ । ଭାରି କାନ୍ଦ ଲାଗୁଥାଏ । ମନ ହଉଥାଏ ଡାକ୍ତରଖାନାରେ ପିଣ୍ଟୁ ଓ ବାବୁଲିଙ୍କୁ ଦେଖିବାପାଇଁ । ହେଡ୍‌ସାର୍ ବି ତ ଡାକ୍ତରଖାନା ଚାଲିଯାଇଥାନ୍ତି । ଅଫିସ୍‌ରେ ଥା’ନ୍ତି ଗୋବିନ୍ଦ ସାର୍ । ସାର୍ ସେମିତି ଚତୁର୍ଥ ଶ୍ରେଣୀକୁ ପଶିଛନ୍ତି—ଉଠି ଠିଆହେଲି । ଚାରିଆଡ଼କୁ ଚାହିଁଲି । ଡିଆଁଟାଏ ମାରିଦେଲି ଡାକ୍ତରଖାନା ଆଡ଼କୁ । ପିଅନ ମଧୂଆ ଲିଟୁ ଲିଟୁ ଡାକଡାକିକା ମୋ ପଛରେ ଦୋଉଡ଼ିଲା । ସେ କ’ଣ ଆଉ ମତେ ଦୌଡ଼ାରେ ପାରିଥାନ୍ତା କି ? ତା’ର ସେ ରହିଗଲା ।

ମୁଁ ଡାକ୍ତରଖାନା ଆସିଲି । ପିଣ୍ଟୁ, ବାବୁଲି ପାଖରେ ଠିଆହେଲି । ଦାସମଉସା, ହେମବାବୁ, ରଣାମାମୁ ପିଣ୍ଟୁ ମୁଣ୍ଡରେ ଔଷଧ ମାରି ପଟି ବାନ୍ଧି ଦେଇଥିଲେ । ବେଶୀ କିଛି ହେଇନି ବୋଲି କହିଲେ । ବାବୁଲିପାଇଁ ଅଏଣ୍ଟମେଣ୍ଟ ଲେଖିଦେଲେ ।

ପିଣ୍ଟୁ ଆଉ ବାବୁଲିଙ୍କୁ ମୋର ଗେଲ କରିବାକୁ ଇଚ୍ଛା ହଉଥିଲା । ସେମାନଙ୍କୁ କହିଦବାକୁ ମନ ହଉଥିଲା—“ପିଣ୍ଟୁ, ବାବୁଲି, ମୋ ସୁନାଭାଇ ପରା, ମୁଁ ତମକୁ ମାରିନି । କ’ଣ ମନହେଲା କେଜାଣି ଗୋଡ଼ରେ ବେଞ୍ଚଟାକୁ ପଛକୁ ପେଲିଦେଲି । ତମେମାନେ ପଡ଼ିଗଲ । ତମେ ତ ଜାଣିଚ—ମୁଁ ଚଗଲାଟା । ମୋର ଭୁଲ୍ ହେଇଛି । ମତେ ଯେତେ ମାରୁଚ ମାର । ଆଉ ସେମିତି କରିବିନି ।” ହେଲେ, ସେମାନଙ୍କୁ କିଛି କହିପାରିଲିନି । କେନ କେନ କରି ଚାହିଁରହିଲି । କାନ୍ଥକୁ ଆଉଜି ଠିଆହେଲି । ସେମାନେ ବି କିଛି ନ କହି ଖାଲି ଚାହିଁରହିଲେ ।

ହେଡ୍‌ସାର୍ ମତେ ସେମିତି ଦେଖିଦେଇଛନ୍ତି—କହିଲେ, ତତେ ପରା ଆଣ୍ଠେଇପକେଇ ଆସିଥିଲି । ଏଠିକି କେମିତି ଆସିଲୁ ? ନେତାଗିରି ନା ? ସ୍କୁଲକୁ ଚାଲ୍, ତୋର ମୋର କଥାବାର୍ତ୍ତା । ରଣାମାମୁଙ୍କୁ କହିଲେ— “ଏଇଟାକୁ ନେଇ ଘରେ ଛାଡ଼ିଦିଅନ୍ତୁ । ସବୁଦିନ ପ୍ରା ନାଁରେ କେସ୍ । ଆଉ ପାରିହବନି । କେତେ ଜଗିବ ?”

ସାର୍ ପିଣ୍ଟୁ ଓ ବାବୁଲ୍‌ଙ୍କୁ ସାଙ୍ଗରେ ନେଇ ଚାଲିଗଲେ । ଡାକ୍ତରଖାନା ଆଗରେ ତ ଆମ ଘର । ମାମୁଙ୍କ ସାଙ୍ଗରେ ମୁଁ ସୁନାପିଲାଟି ପରି ଘରକୁ ଆସିଲି । ଗୋଡ଼ହାତ ଧୋଇ ଖଟ ଉପରେ ଶୋଇପଡ଼ିଲି । ମାମୁ ବାପାଙ୍କୁ କ'ଣ କହିଲେ କେଜାଣି, ବାପା ପ୍ୟାଣ୍ଟ୍ ପିନ୍ଧି ତାଙ୍କ ସାଙ୍ଗରେ ସ୍କୁଲ୍‌କୁ ଚାଲିଗଲେ । ମତେ କିଛି କହିଲେନି । ମା' କଲେଜରୁ ଆସି, ମୁଁ ସ୍କୁଲରୁ କାହିଁକି ପଳେଇଆସିଛି ବୋଲି ପଚାରିଲା । ମୁଁ କିଛି ନ କହି ଚୁପ୍‌ଚାପ୍ ଶୋଇପଡ଼ିଲି । କେତେ ସମୟ ପରେ ବାପା ଆଉ ମାମୁ ଫେରିଲେ । ତାଙ୍କ ସାଙ୍ଗରେ ହେଡ୍‌ସାର୍ ।

ସାର ବାପାଙ୍କୁ କହିଲେ—ଦେଖନ୍ତୁ ଦାଶବାବୁ, ଗୌତମର କିଛି ଦୋଷ ନାହିଁ । ପିଲାଟା ଚଗଲା । ହେଲେ ଭରି ଇଣ୍ଟେଲିଜେଣ୍ଟ । ଏତେ ଚଗଲା ଆମେ କୋଉଠି ଦେଖିନୁ । ତାକୁ ମାରଧର କରିବେନି ।

ମୋତେ ସେ ପାଖକୁ ଡାକିଲେ । ମୁଁ ଡରି ଡରି ତାଙ୍କ ପାଖରେ ଯାଇ ଠିଆହେଲି । ମତେ ସେ ବୁଝେଇ କହିଲେ—ଗୌତମ, ଆଉ ଏତେ ଦୁଷ୍ଟ ହବୁନି । କ'ଣ କହୁଚୁ ?

ମୁଁ ମୁଣ୍ଡହଲେଇ ହଁ କଲି ।

ସେ ମତେ ଭିତରକୁ ଯିବାପାଇଁ କହିଲେ । ମା' ଜଳଖିଆ-ଚା' ଆଣି ଦେଲା । ସେ ଜଳଖିଆ ଖାଇଲେନି । ଫେରେଇଦେଲେ । ଚା' ପିଇସାରି ସ୍କୁଲ ଗଲେ । ତାଙ୍କ ପଛେ ପଛେ ଚାଲିଗଲେ ମାମୁ । ମୁଁ ମନେ ମନେ ଠାକୁରଙ୍କୁ ଡାକି କହୁଥାଏ—ହେ ପ୍ରଭୁ, ମାମୁ, ସାରେ କୁଆଡ଼େ ନ ଯାଇ ଏଇଠି ଆଉ ଟିକିଏ ରହନ୍ତେ କି ? ବାପା ଯୋଉ ରାଗୀ, ମତେ ମାରି ପକେଇବେ ।

ସେମାନେ ଚାଲିଗଲା ପରେ ବାପା ମତେ ପାଖକୁ ଡାକିଲେ । ମୋ ଦେହ ଥରି ଥରୁଥାଏ । ସବୁଆଡ଼ ଅନ୍ଧାର ଦିଶୁଥାଏ । ମୁଁ ଡରି ଡରି ତାଙ୍କ ପାଖରେ ଠିଆ ହେଲି । ମୋ ପଛେ ପଛେ ବୋଉ ଆସି ତାଙ୍କ ପାଖରେ ଖଟ ଉପରେ ବସିପଡ଼ିଲେ ।

ବାପା ପଚାରିଲେ—କ'ଣ ହେ, ସାର ଯାହାସବୁ କହିଲେ, ତାହା କ'ଣ ସତ ? ତୁ ସ୍କୁଲରେ ଏଇସବୁ କାମ କରୁଛୁ ? ମୋ ପାଟିରୁ କଥା ବାହାରିଲାନି । ଚୁପ୍‌ଚାପ୍ ଠିଆହେଇ ରହିଲି ।

ସେ ବଡ଼ ପାଟିରେ କହିଲେ—କ'ଣ ପଚାରୁଛି ପରା । କାଲି ନା କ'ଣ ?

ମୁଁ ଆସ୍ତେକିନା କହିଲି—ହଁ ।

ତୁ ସାର୍‌ମାନଙ୍କୁ ଠଟ୍ଟିଲ୍ କରୁଛୁ ?

ଏ କଥା ଶୁଣି ମୋ ପାଟି ପୂରା ବନ୍ଦ ହୋଇଗଲା ।

—କ'ଣ କହିପାରୁନୁ ? ଠିଆହୋଇ ରହିଲୁ କାହିଁକି ? ଦେଖିବୁ ଏଇକ୍ଷଣି । ଏତିକି କହି ଠାଏକିନା ଚାପୁଡ଼ାଏ ମାଇଲେ ମୋ ଗାଲରେ । ମୁଣ୍ଡ ଝାଏଁ ଝାଏଁ ହୋଇଗଲା ।

—ସତକଥା କହ, ନହେଲେ ଜୀବନରେ ମାରିଦେବି ।

—ମୁଁ ମୁଣ୍ଡହଲେଇ ହଁ କଲି ।

—ପୁଣି ମୋ ଧରି ହାତକୁ ମୋଡ଼ି ଧରି କହିଲେ—ତୁ କ'ଣ ଏକା ପିଲାହୋଇଚୁ ନା କ'ଣ ? ତୁ କ'ଣ ପାଇଁ ଏତେ ଦୁଷ୍ଟାମି କରିବୁ ? ସମସ୍ତଙ୍କୁ ମାରିବୁ । ନାଁ ପକେଇବୁ । ହିରୋ ହୋଇଚୁ ନା କ'ଣ ? ବାଷ୍ଟାର୍ଡ଼ ।

ଏତିକି କହି ମତେ ସେ ଠେକିଧରି ତଳେ ଦୁଲୁକିନା କଚାଡ଼ିଦେଲେ । ବୋଉ ସେତେବେଳ ପର୍ଯ୍ୟନ୍ତ ଚୁପ୍ ହୋଇ ବସିଥିଲା । ଆଉ ସମ୍ଭାଳିପାରିଲାନି । ଖଟ ଉପରୁ ଓହ୍ଲେଇପଡ଼ି ମତେ କୁଣ୍ଢେଇ ପକେଇଲା । ବାପା ତାକୁ ପେଲି-ଦେଲେ । ଏଥର ସେ ମତେ ଗୁଡ଼ି ବାପୁଙ୍କୁ କୁଣ୍ଢେଇ ଧରିଲା । କାନ୍ଦ କାନ୍ଦ ହୋଇ କହିଲା—ବାପାରେ, ରାଗଟା ଶାନ୍ତ କର । ଏଇ ରାଗ ପରା ମଣିଷର କାଳ । ପିଲାଟା କଥା କାଇଁକି ବୁଝୁନୁ । ସିଏ କ'ଣ ଏତେ କଥା ଜାଣିଛି ? ତା ମୁଣ୍ଡରେ ତ ଗୋଟାଏ ପୋକ ଅଛି । ହୁଦସ୍ତ ଗୋଟାଏ କ'ଣ କରି ପକୋଉଛି । ତା ବୋଲି କ'ଣ ତାକୁ ଏମିତି ମାରିବା ? ସେ ମଣିଷ ହବତ ?

ମା' ଆରଘରୁ କହିଲା—ସେଇଟା ଯୋଉ ବୁଦ୍ଧି ଧରିଛି ବଞ୍ଚିବନି ସେ, କୁରୁମ ହୋଇଯିବ ।

ବୋଉ ମା'କୁ ଗାଳିଦେଇ କହିଲା—ତମର ତାକୁ ମାର କି ରଖ, ମୁଁ ଗଲା ପରେ ଯାହା କରିବ । ମୁଁ ଥିଲାବେଳେ ତା ଦେହରେ ହାତ ଦେଇ-ପାରିବନି । ମୁଁ ଶୁଣୁଥିଲି । ଏବେ ନିଜ ଆଖିରେ ତମ କାଣ୍ଡକାରଖାନା ଦେଖୁଛି । ତମେ ମଣିଷ ନା ଆଉ କ'ଣ ? ଘୁଷୁରି କି ମଇଁଷିକୁ ଏମିତି ବାଡ଼ାନ୍ତି ତ ? ମୋତେ କ'ଣ ବୋଲି ଭାବିଛ କି ? ଭୁଠପଥର ନା କ'ଣ ?

ବୋଉ ଏତେ ରାଗିବାର ମୁଁ ଆଜଯାଏ ଦେଖି ନ ଥିଲି ।

ବାପା ତା ଉପରେ ରାଗିକରି କହିଲେ—ତମେମାନେ ତାକୁ ପଶୁ କରିଦବ । ସେ କ'ଣ କରୁଛି, କିଛି ଦେଖିପାରୁନ । ଅନ୍ଧ ହେଇଚନା କ'ଣ ? ଏମିତି ବାଜେ ପିଲି ମୁଁ କୋଉଠି ଦେଖିନ ।

ବୋଉ ଟିକିଏ ନରମଗଳାରେ କହିଲି—ବାପା ତୁ ଦେଖିନୁ ସିନା, ମୁଁ ଦେଖିଛି । ବୁଢ଼ୀ ହେଲିଣି ପରି । ବାଳୁତ ପିଲଟା । ତାକୁ ବୁଝେଇଉନ । ଖାଲି ମାରୁଛ । ଟସେ କ'ଣ ବୁଝି ସୁଝି ଏତେ କାମ କରୁଛି ? ଆଡ଼ବାଯୁଁାଟାଏ । ଯାହା ମନହେଲି କରୁଛି । କ'ଣ କରୁଛି, ନଜେ ଜାଣିପାରୁନ । ଏତେ ମାଡ଼ ଖାଇ ପୁଣି ସେଇ କାମ କରୁଛି । କାଇଁ କରୁଛି ଏତିକ ବୁଝିପାରୁନ । କଲେଜ ପିଲିଙ୍କୁ ବାପମା' ହଲକଯାକ ପଢ଼ୋଉଛନ୍ତି । ପିଲିଙ୍କୁ ପଶୁଙ୍କ ପରି ବାଡ଼େଇଲେ, ମଣିଷ ହ'ନ୍ତ ? ତୁ ବଡ଼ ପିଲଟା ହେଲୁଣି, ତୋ ମୁଣ୍ଡକୁ ପୋକ ଚରିଯାଉଛି ଯେ କ'ଣ କରୁଚୁ ଜାଣିପାରୁନୁ । ପିଲଟାକୁ ମାରୁଚ କ'ଣ ପାଇଁ ? ତାକୁ ମାରିଦବ ନା କ'ଣ ?

ବାପା ରାଗରେ ଖାଲି ଫଁ ଫଁ ହଉଥାନ୍ତି । ମୁଁ ବୋଉ କାନି ଭିତରେ ପଶି ଗୋଟାପଣେ ଥରୁଥାଏ । ମୋ ଉପରେ ମାଡ଼ ଦେଖି ଟୁଲୁ ଯାଇ ମା'କୁ କୁଣ୍ଢେଇ କାନ୍ଦିଲି । ମା' ତାକୁ ଧମକେଇ କହିଲି—"ରହ ବାପ, ତୁ ଖାଲଟାରେ କ'ଣ ଏମିତି ହଉଚୁ ? ତୋ ପିଠିରେ ହବ ଯେ ?"

ବାପା ରାଗ ତମତମ ହେଇ ଯାଇ ଖଟ ଉପରେ ଶୋଇପଡ଼ିଲେ । ବୋଉ ମତେ ସୋଫା ଉପରେ ବସେଇଦେଇ ତାଙ୍କ ପାଖକୁ ଉଠିଗଲା । ତାଙ୍କ ପାଖରେ ବସିଲି । ତାଙ୍କ ମୁଣ୍ଡବାଳକୁ ଆସ୍ତେ ଆସ୍ତେ ଟାଣିଦେଲି । ପିଠି ଆଉଁଷିଲି । ବେକ ଚିପିଦେଲି । ବାପାଙ୍କର ଏଇଟା ଗୋଟାଏ ଅଭ୍ୟାସ । ସବୁଦିନେ ଟିକିଏ ମୋଡ଼ା ନ ଖାଇଲେ ତାଙ୍କୁ ଭଲ ନିଦ ହୁଏନା ।

ସେ ଗରଗର ହେଇ କହିଲେ—ଥାଉ ଥାଉ ଦରକାର ନାଇଁ । ତୋ କାମ ତୁ କରିବୁ ଯା ।

ବୋଉ ଯେମିତି ପୁଣି ପିଠି ମୋଡ଼ିଦେଇଛି—ତା ହାତକୁ ଛୁଙ୍ଗାଡ଼ି ଦେଇ କହିଲେ—କହିଲି ପରି ମତେ ବିରକ୍ତ କରନା । ଶୁଭୁନ ନା କ'ଣ ?

ବୋଉ କାନ୍ଦ କାନ୍ଦ ହେଇ କହିଲି—ହଉରେ ବାପା, ଏମିତି କହୁଥା । ଆଉ କେଇଟା ଦିନ କହିବୁ କ ? ବେଶୀଦିନ ନୁହେଁ ମ । ବେଳ

ପାଖେଇ ଆସିଲ୍‌ଣି । ସେ୍ତ ବୁଢ଼ୀ ବୋଉ କଥାଟା ଟିକିଏ ମାନ । ଏତେ ରାଗ ଭଲ ନୁହଁ ବାପା । ନିଜର କ୍ଷତି । ତୁ ଆଗ କହ—ମୁଁ ବଞ୍ଚିଥିବାତକ ସେ ହୁଣ୍ଡାଟାକୁ ମାରିବୁନି । ପଣ୍ଡିତେ ପରା ଜାତକ କଲାବେଳେ କହୁଥିଲେ, ତା'ର ବାଳରିଷ୍ଟ ଅଛି । ମଙ୍ଗଳବାରକୁ ସୋମବାର ତା ଉଷାମ ମହାଦେବ ଗାଧୋଇ-ଦଉଛି । ଏଗାର ବରଷ ପର୍ଯ୍ୟନ୍ତ ସେ ଏମିତି ପାଗଳାମି କରିବ । ଏ କଥା କ'ଣ ମିଛ ? ଦେଖୁନୁ, ସେ କେମିତି ବାପୁଙ୍କ ପରି ହଉଛି । ସେ ତୋଠୁ ପରା ଲକ୍ଷେ ଗୁଣ ବୁଦ୍ଧିଆ । ତା ରୂପ କହିଦଉଛି । ମୋ କଥା ମିଛ ହବନି । ମୁଁ ତ ମରିଯିବି । ମନେ ପକେଇବୁ ବୋଉ କଥା । ଦଶ ବରଷର ସେ ମଉଡ଼ମଣି । ତୁ କିଛି ବୁଝୁନୁ ବାପା, ଟିକେ କଥାରେ ଖାଲି କୋପ କରୁଛୁ । ଏମିତି କୋପ କରି କରି ତୋ ନିଜ ଦେହ କ'ଣ ହେଲାଣି କହିଲୁ ? ମରିଥିଲେ ତ କୋଉଦିନୁ ଯାଆନ୍ତିଣି । ଆଉ କେତେଟା ଦିନ ବଞ୍ଚିବି । ମୋ ସାନକଥା ମାନ୍ ।

ତା କଥା ଶୁଣି ବାପା ଉଁ କି ଚୁଁ କିଛି କହିଲେନି । କଡ଼ମୋଡ଼ି ଶୋଇଲେ । ତାଙ୍କୁ ମୋଡ଼ି ଦଉ ଦଉ ବୋଉ ମତେ ପାଖକୁ ଡାକିଲା । ମୁଁ ଯାଇ ବାପାଙ୍କ ପାଖରେ ଖଟ ଉପରେ ବସିଲି ।

ବୋଉ ପୁଣି ତାଙ୍କୁ ଖାଇବାକୁ ଡାକିଲା । ମାତ୍ର ସେ ମନା କରି-ଦେଲେ । ଖଟତଳକୁ ଓହ୍ଲେଇ ସେ ତାଙ୍କ ହାତକୁ ଟାଣିଲା । କହିଲା—ବାପା, ଅବୁଝା ହଉଚ କାହିଁକି ? ଉଠ । ଏଇକଥାକୁ ଖାଇବୁନି । ମୁଁ ଖାଇନି ପରା । ସେ୍ତ କି କଥା ?

ବାପା କହିଲେ—ମୁଁ ପରେ ଖାଇବି । ତମେମାନେ ଖାଇସାର ।

ବୋଉ କିନ୍ତୁ ତାଙ୍କ କଥା ଶୁଣିଲାନି । ତାଙ୍କ ହାତଧରି ଯେମିତି ଟାଣିଲା, ବିରକ୍ତ ହେଇ କହିଲେ—ଓଃ, ତମେମାନେ ରଖେଇଦବନି । କି ଦୋଷ କରିଥିଲି ତମମାନଙ୍କ ପାଖରେ ? ମାରିଦେଲେ ଯାଇ ଶାନ୍ତ ପାଇବ ।

ବୋଉ ତାଙ୍କୁ ଆଉ କିଛି ନ କହି ଏପଟେ ଘରକୁ ଚାଲିଆସିଲା । ତା ପଛେ ପଛେ ମୁଁ ବି ଉଠିଆସିଲି । ମତେ କାନରେ ପୋଛି ଦଉଦଉ ସେ କହିଲା—ହୁଣ୍ଡାଟା, ଏତେ ଚଗଲା ହଅନ୍ତି ? ଏତେ ମାଡ଼ଗାଳି ଖାଉଛୁ କିଛି ବୁଝିପାରୁନୁ ? ମା' ତତେ କେବେ ବୁଦ୍ଧି ଦବ କେଜାଣି ? ତା ଇଚ୍ଛା ।

ମା’ ମତେ ପାଖକୁ ଡାକି ଚୁପ୍ ଚୁପ୍ କରି କହିଲା—ଯା’, ବାପାଙ୍କ ପାଦ ପାଖରେ ବସି କହ, ବାପା ! ମୋର ଭୁଲ୍ ହେଇଛି । ଆଉ ଦୁଷ୍ଟ ହେବିନି । ତମେ ଯାହା କହିବ, କରିବି । ତମ କଥା ମାନିବି । ଖାଇବ ଉଠ । ଯା’ ଭୁଲ୍ ମାଗ, ଯା’ ।

ବାପାଙ୍କୁ ଏତେକଥା କହିବାପାଇଁ ମତେ ଜମାରୁ ଭଲ ଲାଗିଲାନି । ବାପାଙ୍କୁ କ’ଣ ଏତେ କଥା କହନ୍ତି ?

ମାତ୍ର ମା’ ଯେମିତି ମତେ ଆଖି ଦେଖେଇଲା, ଡରି ଡରି ତାଙ୍କ ପାଖକୁ ଗଲି । ଖଟତଳେ ଠିଆହେଇ, ସେ ଯାହା କହିଥିଲା, ସବୁକଥା କହିଲି । ବାପା କିଛି କହି ବୋଲି କହି କହିଲେନି । ମୁଁ ସେମିତି ତାଙ୍କ ପାଖରେ ଠିଆହେଇ ରହିଲି । ଅନେକ ସମୟ ପରେ ସେ ଉଠିବସିଲେ । କହିଲେ—ଯା’, ମା’କୁ କହ, ଖାଇବାକୁ ବାଢ଼ିବ ।

ମା’ ତ ରେଡ଼ି ହେଇଥିଲା । ବଢ଼ାବଢ଼ି କରିଦେଲା । ସମସ୍ତେ ସାଙ୍ଗ-ହେଇ ଖାଇବସିଲୁ ।

ସନ୍ଧ୍ୟାରେ ବୋଉ ପାଖରେ ମା’ ବସିଥିଲାବେଳେ ତାକୁ କହିଲି—ବୋଉଲୋ, ଯାହା ପଚାରିବି କହିପାରିବୁନା ? ପାରିବୁନି । ଭୁଟା ହୁଣ୍ଡୀ । ମୂର୍ଖ । ପାଠଶାଠ ପଢ଼ିନୁ ।

ହସି ହସି ସେ କହିଲା—ତୁ ତ ଆମର ଷଣ୍ଢ । ହଉ ପଚାର । ଦେଖିବା । ମୁଁ ନ ପାରିଲେ, ମୋ ବାପା କହିବେନି କି ?

ମୁଁ କହିଲି—ତୋର ହେଲା ପେଟରୋଗ । ପେଟ କଟାହେଇଛି । ଆଉ ତୁ ସବୁଦିନେ ପେଟ ପେଟ ହେଇ ଗଡ଼ୁ । ତା’ହେଲେ କହ—ମା’, ଉଷାମା, ବାପା, ସାନବାପା, ସୁଷମାମାଉସୀର କି କି ରୋଗ ଅଛି, କହ ।

ବୋଉ କହିଲା—ମୁଁ ପାରିବିନି । ତୁ କହିଦଉନୁ । ତୁ କହିଲେ କ’ଣ ହବନି ? ମୁଁ କହିଲି—ହେଲା, ତତେ ଆସୁନି ତ, ଶୁଣ । ସୁଷମାମାଉସୀର ଘୁମା ରୋଗ । ବହି ଧରିଲେ ତା’ର ଖାଲି ନିଦ । ପ୍ରଥମେ ଢୋଳେଇବ ଆଉ ବହି ଖାତା କୋଡ଼ରେ ପୂରେଇ ଘୁଙ୍ଗୁଡ଼ିମାରିବ ।

ବାପାଙ୍କର ହେଲା ଆଖି ଆଉ ପଢ଼ାରୋଗ । ଶୋଇଲାବେଳେ, ଗାଧୋଇଲାବେଳେ ବି ଚଷମା ପିନ୍ଧିଥିବେ । ସବୁବେଳେ ଖାଲି ପଢୁଥିବେ, ଲେଖୁଥିବେ । ପାଟିକଲେ ରାଗିବେ । ରାଗ ତ ନାକ ଅଗରେ ।

ମା'କୁ ପଚାରିଲି—ମା'ଲୋ, ତୋର କି ରୋଗ କହିଲୁ ? ହେଇ ତ ମା' କହିଲା । ପାଟି ଖାଲି ପାକୁପାକୁ କରୁଛି ।

"ତୁ କହ ଟିକେ ଶୁଣିବା ।"

"ତୁ ଜାଣିନୁ । ତୋର ତିନୋଟା । ଏକ ନମ୍ବର—ବଣ୍ଡି । ଖାଲି ପାଦରେ ଗୋଲାପାଡିବୁଲୁ । ଖାଲି ତେଇଁବୁ । ବ୍ଲେଡ୍‌ରେ କାଟିଲେ ପୁଣି ହବ । ଦୁଇନମ୍ବର—ପାଟି ! ଏଠି ପାଟିକଲେ ଅନୁଗୋଳରେ ବାପାଙ୍କୁ ଶୁଭିବ । ପଢ଼େଇଲାବେଳେ କଲେଜ ଖାଲି କମ୍ପୁଥିବ । ତିନିନମ୍ବର ହେଲା—ଲିଟୁ । ସବୁବେଳେ ଖାଲି ଲିଟୁ ଲିଟୁ ବୋଲି ଚିଲେଉଥିବୁ । କଯେ ପାଟି । ଲିଟୁକୁ ଯେମିତି କଏ ଝେଙ୍କିନଉଛି ।

ବୋଉ ପଚାରିଲା—ଆଉ କାହାର କ'ଣ କହୁନୁ ।

"ଉଷାମାଙ୍କର ଦାନ୍ତରୋଗ । ସବୁବେଳେ ଖାଲି କଠିକ ଯାଇ ଦାନ୍ତ ଓପାଡ଼ୁଛି । ପାକେଇ ହେଇଗଲାଣି । ମଝିଆବାପା, ଝୁଲୁର ଚନ୍ଦୁରୋଗ । ଦୁଇଜଣଙ୍କ ମୁଣ୍ଡରୁ ବାଳଯାକ ସବୁ ମୂଷା ଖାଇଯାଇଛନ୍ତି । ସାନବାପାର ବୁଲାରୋଗ । ବଡ଼ବାପାର ବଳଦରୋଗ । ବଡ଼ବୋଉର ଗୁଣ୍ଡି । ତା ଝିଅର ତ ବଣ୍ଡି । ଗୁଣ୍ଡି ବଣ୍ଡି ମାରିବେ ଦାଣ୍ଡି ।"

"ତୋର କ'ଣ କିଛି ନାହିଁ ?"

"ମୁଁ କ'ଣ ମନାକଲି କି ? ଲିଟୁର ହେଲା ଚଗଲାରୋଗ । ଯେତେ ମାଇଲେ କ'ଣ ସେ ଛାଡ଼ିବ ? ଯାହାର ଯାହାନା ।"

ମୋ କଥା ଶୁଣି ସମସ୍ତେ ହସିଲେ ।

ବୋଉ ମୋ ମୁଣ୍ଡ ଆଉଁଶିଦେଇ କହିଲା—"ଦେଖିଲୋ ମା, ତୋ ପୁଅ କେତେ ଖୁଣ୍ଟ ବାହାର କରୁଛି । ଏତେ ବୁଦ୍ଧି କୋଉଠି ରଖିଛି । ମାଡ଼ ଖାଇବନି ଆଉ କ'ଣ କରିବ ?"

ବୋଉ ଯେମିତି ଖଟ ଉପରେ ଗଡ଼ପଡ଼ୁଛି—ମୁଁ ସାଙ୍ଗେ ସାଙ୍ଗେ ତା ଦଦଟାକୁ ମାଡ଼ିବସିଲି । ଝୁଲୁ ବି ମାଡ଼ିବସିଲା ଆରଟାକୁ ।

ସେ ମତେ ପେଲିଦେଇ କହିଲା—ଏତେ ଚଗଲା ହ'ନା ବାପା । ବାପା ଆସୁଥିବେ । ଛାଡ଼ ।

ମୁଁ କହିଲି—"ଆସନ୍ତୁ । ତୁ ଲୁଗା ଘୋଡ଼େଇଦଉନୁ ।"

ମୋ କଥା ଶୁଣି ବୋଉ ଆଉ ମା' ହସିଉଠିଲେ ।

## ।। ଭାର ।।

ଅନୁଗୋଳ ଆସି ଦିନଟା ବେକାର ହୋଇଗଲା । ମୋଟେ ଭଲ ଲାଗିଲାନି । ମା' ଉପରେ ଖାଲି ବିରକ୍ତ ହେଲି । ଆଉ କ'ଣ କରିପାରନ୍ତି କି ?

କାଲି ଯେତେବେଳେ ସେ ଏଠିକି ଆସିବାକୁ ବାହାରିଲା, ମୁଁ ତାକୁ ମନା କଲି । କହିଲି—ମୁଁ ଯାଇପାରିବିନି, ତୋର ତୁ ଯା' ।

ସେ କହିଲା—କ'ଣ ଏକୁଟିଆ ରହିବୁ ? ଡିଆଁଡେଇଁ କରିବାକୁ ସୁବିଧା ହବ । ପୂରା ଗୁରିଖୁଣ ମାଫ୍ । ପୁଅର ବହୁତ ବୁଦ୍ଧି ହେଇଗଲାଣି ।

"ତୁ ଜମା ବୁଝୁନୁ । ମୁଁ ପ୍ରଧାନମନ୍ତ୍ରୀଟି । ଗୁରୁ ଦିବସରେ ଯଦି ନ ରହିବି, ସାର୍ ଆଉ ପିଲାମାନେ କ'ଣ ଭାବିବେ ? ସମସ୍ତେ ଖରାପ କହିବେନି ? ଆମ କ୍ଲାସ୍‌ରେ କିଛି ହେଇପାରିବନି । ମୋ ପାଖରେ ସମସ୍ତଙ୍କ ପଇସା ଅଛି । କ'ଣ କରିବି ତୁ କହୁନୁ ?"

ମୁଁ କାନ୍ଦିଲି । ଖୁମାଣ ପୋଡି ବସିଲି । ସେ ମୋ କଥା ଶୁଣିଲାନି । ସେ ତ ବଡ଼ପିଲା । ତା ଇଚ୍ଛା । ଯା' ଗୃହିଁବ, ତା କରିପାରିବ । ଆମ ସାନ ସାନ ପିଲାମାନଙ୍କୁ ପଗ୍ଚରେ କିଏ ? ଆମର ଯେମିତି କିଛି ନାହିଁ ।

ସେ ଓଲଟି ମୋତେ ରଗିକରି କହିଲା—ହଉ, ତୋର ତୁ ଥାଆ । ମୁଁ ଝୁଲୁକୁ ନେଇ ଯାଉଛି । ଅତି ଦେଖେଇ ହେଉଛି । ପ୍ରାଇମିନିଷ୍ଟର ହେଇଛି । ପଇସା ସାର୍‌ଙ୍କୁ ଦେଇଦଉନୁ । ଇଏ ତ ଏକା ପଢ଼ୁଛି ଆଉ । କଥା କହିବାକୁ କାହିଁରେ କ'ଣ । ପାଠ ଘରେ ? ରହ ତୁ । ତୋ ଇଚ୍ଛା ।"

ମୁଁ ସିନା ଆଗରୁ ଏକା ଏକା ରହିବାକୁ କହୁଥିଲି । ଭାବିଥିଲି—ଧମକେଇଲେ, ମା'ଟା ମୋ କଥା ମାନିବ । ତା'ର ତ ବାପାଙ୍କ ପାଖକୁ ଯିବାକୁ ମନ । ମତେ କ'ଣ ଆଉ ପଗ୍ଚରିବ ? ଏକୁଟିଆ ରହିବାକୁ ଡର ମାଡ଼ିଲା । ତା ପଛେ ପଛେ ଅନୁଗୋଳ ଆସିଲି ।

ସକାଳୁ ସକାଳୁ ସ୍କୁଲ କଥା ଭାରି ମନେପଡ଼ିଲା । ସାଙ୍ଗମାନେ ଘର ଧୋଉଥିବେ । ଆମ୍ବପତ୍ର, କଦଳୀଗଛ ଡାଳରେ କ୍ଲାସ୍ ଦୁଆରମୁହଁ ସଜେଇ-ଥିବେ । ଟେବୁଲ୍, ଚେୟାର ବି ପତ୍ରଫୁଲରେ ଭାରି ସୁନ୍ଦର ଦିଶୁଥିବ । ସାର୍‌ମାନଙ୍କୁ ଡାକିଥିବେ । ସେମାନଙ୍କ ଗୋଡ଼ ଧୋଇ ଦେଇଥିବେ । ମୁଣ୍ଡରେ

ଚନ୍ଦନ ଆଉ ବେକରେ ଫୁଲମାଳ ଦେଇ ପୂଜା କରିଥିବେ । ଧୂପକାଠି ବି ଲଗିଥିବ । ଭଗୀ ସାହୁ ଦୋକାନରୁ ଆସିଥିବା କେତେ ରକମର ମିଠା ସେମାନଙ୍କୁ ପେଟପୂରା ଖାଇବାକୁ ଦେଇଥିବ । ସବୁ ଶ୍ରେଣୀର ପିଲାଙ୍କ ଭିତରେ ପୁଣି କମ୍ପିଟେସନ୍ । କାହା ଘର କେତେ ସୁନ୍ଦର ହୋଇଛି, କିଏ କେତେ ଭଲକରି ଖାଇବାକୁ ଦେଇଛି, କୋଉ ଶ୍ରେଣୀ ଶିକ୍ଷକ ପାର୍ଶ୍ଵକୁ ବେଶୀ ଟଙ୍କା ଦେଇଛି, କୋଉ ପିଲାମାନେ ସାର୍‌ମାନଙ୍କୁ ବେଶୀ ଭକ୍ତି କରିଛନ୍ତି, ଏସବୁ କଥା ପଡ଼ିବ । ମତେ ସମସ୍ତେ ଖୋଜୁଥିବେ । ସାର୍‌ମାନେ ସମସ୍ତଙ୍କୁ ପଚାରୁଥିବେ, ଲିଟୁ ଚ ଗଲା କୁଆଡ଼େଗଲା ? ସେ ନାହିଁ ଯେ, ସ୍କୁଲଟା ଜମାରୁ ଭଲ ଲାଗୁନି । ଲିଟ୍ଟୁ ଚଗଲା ହଉଚି ବୋଲି ସବୁବେଳେ କହିବେ । କୁଆଡ଼େ ଗଲେ, ସ୍କୁଲ ବନ୍ଦ କରିଦେଲେ କହିବେ—ଭଲ ଲାଗୁନି । ସେ କୋଉ ଖମାରରେ ଅଛି ଯେ ପାଇବେ । ସେ ତ ଅନୁଗୋଳରେ । ଭଲ ନ ଲାଗିଲେ ସେ କ'ଣ କରିବ । ଏଥର କାହାକୁ ଡାକିବ, ଗାଳିଦବ ଦଉଥା । ଏମିତି ମା'ଟା ଯେ, ମୋ କଥା ଜମାରୁ ବୁଝୁନି । ଛି ।

ବାପା କଲେଜରୁ ଫେରିଲା ପରେ ପଚାରିଲି—ବାପା, ଆଜି ତ ଗୁରୁ ଦିବସ । ମିଠା ଆଣିଛ ନା । ଫୁଲମାଳ କାଇଁ ? ତମ ପିଲାମାନେ ତ ବଡ଼ିଆ ପୂଜା କରିଥିବେ । ବଡ଼ ବଡ଼ ପିଲା । ଘରଗୁଡ଼ାକ ବି ବଡ଼ିଆ ସଜେଇଥିବେନା । ସବୁ ଖାଇଦେଲ, ଆମପେଇଁ କିଛି ଆଣିଲନି । ଆମ ସାର୍‌ମାନଙ୍କୁ ତ ଆମେ ଦଉ । ତମକୁ ଲାଜ ଲାଗିଲା ବୋଧେ । ହଉ ହେଲା, ସେମାନଙ୍କଠୁ ନ ଆଣିଲେ, ଦୋକାନରୁ କିଣି ଆଣିଲନି । ଖମାରରେ ଥିଲେ, କେତେ କଥା ଖାଇଥାନ୍ତି ।

ମୋ କଥା ଶୁଣି ବାପା ହସିଲେ । କହିଲେ—ହଉ ଆଣିବା, ବେଶୀ କଥା କହନା ?

"ହଁ, ଏଥର ଜାଣିଲି ।"

"କ'ଣ ଜାଣିଲୁ ?"

"ତମ ପିଲାମାନେ ତମକୁ କିଛି ଦେଇ ନାହାନ୍ତି । ସେଥିପାଇଁ ତମ ମନ ଭାରି ଖରାପ, ଦୁଃଖ । ତେଣୁ ମୋ କଥା ଶୁଣି ହସିଲ ।"

"ଏଇଟା ସୁଉଦୁ ବଦମାସ୍ । ମନ ଦୁଃଖରେ କ'ଣ କିଏ ହସନ୍ତି ? ଖୁସିରେ ହସନ୍ତି ନା ଆଉ । ଦୁଷ୍ଟାଟା ।"

"ତମେ ମିଛ କହିଲ । ହସଟା କିନ୍ତୁ ମତେ ଭଲ ଲାଗିଲାନି । ମୁଁ ଜାଣିଛି—ଆଜି ତମ ପିଲାମାନେ ତମକୁ ପୂଜା କରି ନାହାନ୍ତି । ତମେ ମିଛ କହୁଛ ।"

"ଯା'ହେଉ ପୁଅ ମୋର ଜାଣିଗଲା ସବୁକଥା । କଲେଜରେ ସବୁ ବଡ଼ ପିଲା ପଢ଼ନ୍ତି । ତୁ ଦେଖୁନୁ ତ । ଆମକୁ ସବୁ ପୂଜା କରିବାକୁ ସେମାନଙ୍କୁ ଲାଜ ଲାଗିବନି ? ମୋ ପାଦ ପାଖରେ ମୁଣ୍ଡନୁଆଁଇ ପ୍ରଣାମ କରିବାକୁ ତାଙ୍କୁ ଲାଜ ଲାଗୁନି ?"

"ତମେ ପୁଣି ମତେ ଭୁଲେଉଛ । ବଡ଼ ବଡ଼ ଲୋକମାନେ ଠାକୁର ପୂଜା କରନ୍ତିନି କି । ତମେ ତ ମତେ କହିଛ—ଗୁରୁ ବ୍ରହ୍ମା, ଗୁରୁ ବିଷ୍ଣୁ, ଗୁରୁଦେବ ମହେଶ୍ୱର । ସେ ପରଂବ୍ରହ୍ମ । ତାଙ୍କୁ ନମସ୍କାର । ସାର୍‌ମାନେ ତ ଠାକୁର । ସେମାନଙ୍କୁ ପୂଜା କରିବାରେ ଲାଜ କ'ଣ ଯେ ?"

"ବଡ଼ ପିଲାମାନେ ସବୁ ଭାଷଣ ଦିଅନ୍ତି । ଶ୍ଳୋକ ପଢ଼ନ୍ତି । ଅମକ କରିବା ତମକ କରିବା ଉଚିତ ବୋଲି ଉପଦେଶ ଦିଅନ୍ତି । ସେମାନେ କ'ଣ ସାନ ସାନ ପିଲା ହୋଇଛନ୍ତି ଯେ, ସତକୁ ସତ ସେ କାମଗୁଡ଼ିକ କରିବେ ।"

"ତମେ ଜାଣିନ ବାପା । ମିଛ କହୁଛ । ବଡ଼ ପିଲାମାନେ ପୂଜା କରନ୍ତି । ମିଠା, କଲମ, ଆଉରି କେତେ କେତେ ଜିନିଷ ସବୁ ସାର୍‌ଙ୍କ ପାଇଁ ଆଣନ୍ତି । ଯୋଉ ସାର୍ ଭଲ ପଢ଼ାନ୍ତି, ସେମାନଙ୍କୁ ଦେବେନି ଆଉ । ସମସ୍ତଙ୍କୁ କାହିଁକି ଦେବେ ? ଆମ ସେପଟ ଘରେ ଯୋଉ ପାଣିମଉସା, ମହାନ୍ତିମଉସା, ଯିଏ ସବୁବେଳେ ଟିଉସନ କରନ୍ତି ମ, ତାଙ୍କରି ଘରକୁ ସକାଳୁ ସକାଳୁ ପିଲାମାନେ ତ ଫୁଲତୋଡ଼ା, ମିଠା, କେତେ କେତେ ଜିନିଷ ଆଣିଥିଲେ । କମିନାନାମା ଘରକୁ ଯାଇଥିଲି । ପେଟେ ମିଠା ଖାଇଛି । ତମେ ତ ସେମାନଙ୍କ ଭଳିଆ ନୁହଁ, ତମ ଘରକୁ କାହିଁକି ଆସିବେ ? ପାଠ ତ ପାଠ, ପୁଣି ଓଡ଼ିଆ । ଛି, ମା' ଯେମିତି ବାପା ବି ସେମିତି ।

ସେପଟ ଘରୁ ମା' କହିଲା—"ସେମାନେ ସବୁ ପରା ଟିଉସନ ପିଲା । ଆସନ୍ତେନି କି ? ନ ଆସିଲେ ଅସୁନ୍ଦର ହବନି ?"

ମୁଁ ରାଗିଯାଇ କହିଲି—ହଁ, ସବୁବେଳେ ଖାଲି କହିବ, ଟିଉସନ ପିଲା । ସକାଳୁ ସନ୍ଧ୍ୟାଯାଏ ସେମାନେ କେତେ ପରିଶ୍ରମ କରୁଛନ୍ତି । ବୁଲି-ଯିବାକୁ ବି ବେଳ ପାଉନାହାନ୍ତି । ତୁ ବୁଝୁନୁ । ତୋ ପାଖକୁ କାହିଁକି କେହି

ଆସୁ ନାହାନ୍ତି । ତୁ ଗଧୀ । ଖାଲି ମିଛ କହୁଛୁ । ପାଠ ପଢ଼େଇଲେ ପିଲା ଆସିବେ । ଆମ ମଦନସାର୍‌ଙ୍କ ପାଖରେ କେତେ ପିଲା ପଢ଼ୁଛନ୍ତି ଜାଣିଛୁନା ? ଆଉରି ତ ଏତେ ସାର୍ ଅଛନ୍ତି, ସେମାନଙ୍କ ପାଖକୁ ନ ଯାଇ ତାଙ୍କ ପାଖକୁ କାହିଁ ଯାଉଛନ୍ତି ?

ମୋ କଥା ଶୁଣି ବାପା ଗୁମ୍‌ମାରି ବସିପଡ଼ିଲେ । ତାଙ୍କ ମୁହଁରେ ଆଉ ହସ ନ ଥିଲା । ଦୀର୍ଘଶ୍ୱାସ ପକେଇଲେ । କହିଲେ—"ବୁଝିଲୁ ବାପା, ଭଲ ସାର୍‌ମାନଙ୍କ ପାଖକୁ ତ ବେଶୀ ପିଲା ଯା'ନ୍ତି । ସାର୍‌ମାନେ ଯୋଉ ପିଲାମାନଙ୍କୁ ଭଲ ପାଆନ୍ତି, ସେମାନେ ତ ବଡ଼ ମଣିଷ ହୁଅନ୍ତି । ମୋ ସାର୍‌ମାନେ ମୋତେ ଭାରି ଭଲପା'ନ୍ତି । ମୁଁ ବି ବେଳେବେଳେ ସେମାନଙ୍କ ସାଙ୍ଗରେ ଯୁକ୍ତି କରେ । ଚିଡ଼ାଏ । ଆମ ଆମ ଭିତରେ କଥା କଟାକଟି ଚାଲେ । ଆଉ ସେଇଥିପାଇଁ ସେମାନେ ମତେ ବହୁତ ବେଶୀ ଭଲପା'ନ୍ତି । ତୁ ତ ଦେଖିଚୁ, ମୋ ସାର୍‌-ମାନେ ଆସିଲେ, ଆମ ଘରେ କେମିତି ରହନ୍ତି । ତମମାନଙ୍କୁ କେତେ ଗେହ୍ଲା କରନ୍ତି । କୋଡ଼ରେ ବସାନ୍ତି । ପାଠ ପଚାରନ୍ତି । ମୋ ପାଇଁ ମିଠା ଆଣିଥାନ୍ତି । ତୁ ଖାଇନୁ ? ଖାଇଚୁଟି ?"

"ତମପାଇଁ ନା ମୋ ପାଇଁ ?"

"ହଉ ହେଲା, ତୋ ପାଇଁ ଆଣିଥାନ୍ତି । ତେବେ ଭଲପା'ନ୍ତି ବୋଲି ଆଣନ୍ତି ତ ? ଭଲପା'ନ୍ତି ବୋଲି ଏଡ଼େ ବଡ଼ ବଡ଼ ଲୋକମାନେ ହୋଟେଲରେ ନ ରହି ଆମରି ଘରେ ରହନ୍ତି ତ ? ବୁଝିଲୁ ବାପା, ଆଜକାଲି ସାର୍‌ମାନେ ଯେମିତି, ପିଲାମାନେ ବି ସେମିତି । ଆମ ବେଳର ସାର୍‌ମାନେ ଏତେ ଲୋଭୀ ନ ଥିଲେ । ଠକୁ ନ ଥିଲେ । ପଢ଼ୋଉଥିଲେ । ଟିଉସନ ଫିଉସନ ଆମ ବେଳେ ନ ଥିଲା । ଆମେ ବି ସେମାନଙ୍କୁ ଭକ୍ତି କରୁଥିଲୁ, ଡରୁଥିଲୁ । ସାଙ୍ଗରେ ବି ଖାଇଥିଲୁ । ସେମାନେ ବି ଆମ ଘରକୁ ଆସୁଥିଲେ । ମତେ ଯୋଉ ସାର୍ ପ୍ରଥମରେ ପଢ଼ୋଉଥିଲେ, ଗାଁରେ ତୋ ଦେହ ଭଲ ନ ଥିଲାବେଳେ ଆସି ଔଷଧ ଦଉଥିଲେନା । ତତେ କାଖେଇ କେତେ ଖୁସୀ ହଉଥିଲେ । ଆଜକାଲି ସେସବୁ କଛି ନାହିଁ । କ'ଣ ସତ ନା ?"

ତାଙ୍କ କଥା ଶୁଣି ମୁଁ ପାଟି ଫିଟେଇଲିନ ।

ସେ ପୁଣି ପଚାରିଲେ—ଗୁରୁଦିବସ ପାଇଁ କେତେ ଟଙ୍କା ମା'ଠୁ ନେଇଥିଲୁ ?

ମୁଁ କହିଲି—ତିନିଟଙ୍କା ।

"କ'ଣ ପାଇଁ ନେଇଥିଲୁ ?"

"ଶିକ୍ଷକପାଣ୍ଠିକୁ ଦୁଇ, ଆଉ ଖାଇବାକୁ ଏକ । ସମାନ ତିନି ।

"ଶୁଣିଲି ତମେମାନେ କାଲେ ବଜାରର ଦୋକାନ ଓ ଲୋକମାନଙ୍କ ଠାରୁ ଚାନ୍ଦା ଆଦାୟ କରୁଥିଲ । ସତ କଥା ନା ?"

"ମୁଁ ମୁଣ୍ଡହଲାଇ ହଁ କଲି ।"

"କ'ଣ ପାଇଁ ବଜାରରେ ବୁଲୁଥିଲ ?"

"ସାର୍ କହିଲେ ଶିକ୍ଷକପାଣ୍ଠିକୁ ଯିବ ।"

"କ'ଣ ଗଲା । ତୁମେ ଦେଖିଛ ?"

"ଆମେ ତ ସାର୍‌ଙ୍କୁ ଦେଇଛୁ । ଯାଇ ନ ଥିବ କି ?"

"ତୋର ମନେଥିବ ବାପା, ତୁ ସେତେବେଳେ ପ୍ରଥମରେ ପଢ଼ୁଥିଲୁ । ଗୁରୁଦିବସ ଦିନ ତମ ସ୍କୁଲ ଆଗଦେଇ ରାସ୍ତା ଉପରେ ଯେତେ ସାଇକେଲ ଯାଉଥିଲା ସମସ୍ତଙ୍କୁ ଭୀମ, ଅର୍ଜୁନ, କସ୍‌କୋ ଆଉ ତୁ ଅଟକେଇ ପଇସା ମାଗୁଥିଲ । ତୁ କହୁଥିଲୁ "ଶିକ୍ଷକପାଣ୍ଠିକୁ ଦାନ କର ।" ଯିଏ ପଇସା ଦଉ ନ ଥିଲା, ତମେ ବାଲୁଙ୍ଗାଦଳ ଗଛ ଉପରୁ ତା ଉପରକୁ ଢେଲା ଓ ପଛରୁ ଧୂଳି ଫୋପାଡୁଥିଲ । କସ୍‌କୋ ତା ଆଦିବାସୀ ଭାଷାରେ ଗାଳି ଦଉଥିଲା । ମନେଅଛି ?"

ମୁଁ ହସିଲି । ମୁଣ୍ଡହଲାଇ ହଁ କଲି ।

ସେ ହସି ହସି କହିଲେ—"ଏଇମାନେ ତମ ସାର୍ ତ ?"

"ତମେ ଜାଣିନ ବାପା, ଆମେ ସବୁ ମାସରେ ହାଣ୍ଡି, ମାଠିଆ, ଚକ୍, ଡଷ୍ଟର, ଖାତା, ଦୁଆତ ପାଇଁ ଯୋଉ ପଇସା ଦଉନା, ସାର୍‌ମାନେ ତାକୁ ପରା ବାଣ୍ଟିକରି ନଅନ୍ତି । ଆମ ସରସ୍ୱତୀ, ଗଣେଶପୂଜାରୁ ଯୋଉ ଟଙ୍କା ବଳେ ତାକୁ ବି ସେମିତି କରନ୍ତି ।"

ବାପା ବିରକ୍ତ ହୋଇ କହିଲେ—ବଦମାସ୍ ଟୋକା, ତୁ କେମିତି ଜାଣିଲୁ ?

"ମୁଁ ଅଫିସ୍‌ରେ ଦେଖିଛି । ସାର୍‌ମାନେନା ଭାରି ପେଟୁ, ଲୋଭୀ ।"

"ଛି, ସାର୍‌ମାନଙ୍କୁ ସେମିତି ସବୁ କହନ୍ତି ? ଆଉ କହିବୁନି । କ'ଣ ମନେ ରହିଲା ତ ? ପାଠ ହବନି ଯେ ।

ମୁଁ ମୁଣ୍ଡହଲେଇ ମନାକଲି । ପୁଣି ପଗ୍ଭରିଲି––ତମେ ପିଲାମାନେ ତମକୁ କାହିଁକି ପୂଜା କଲେନି, ମିଠା ଦେଲେନି, ସେ କଥା କହୁନ ତ ?

"ବାପା ତୁ ବଡ଼ ହଅ, କଲେଜରେ ପଢ଼ । ସବୁକଥା ଜାଣିପାରିବୁ ।" ଆଗରୁ ସେମିତି କାହିଁକି ହଉଚୁ ?"

"ଆଚ୍ଛା ବାପା, କଲେଜ ଲେକ୍‌ଚରମାନେ କ'ଣ ଗୁରୁ ନୁହନ୍ତି, ପିଲାମାନେ କ'ଣ ଛାତ୍ର ନୁହନ୍ତି ?"

ବାପା ଦୀର୍ଘଶ୍ୱାସ ପକେଇ କହିଲେ—ହଁ, ସେମାନେ ଗୁରୁ । ମାତ୍ର ଯୋଉ ଗୁରୁମାନଙ୍କୁ ପୂଜା କରାଯାଏ, ସେମାନେ ସେମିତିଆ ଗୁରୁ ନୁହନ୍ତି । ସେମାନେ ଯେଉଁମାନଙ୍କୁ ପଢ଼ାନ୍ତି, ସେମାନେ ଛାତ୍ର । ମାତ୍ର ଛାତ୍ର କହିଲେ ଯାହା ବୁଝାଯାଏ––ସେମାନେ ତାହା ନୁହନ୍ତି ।

ସେମାନେ ଆଉ କ'ଣ ତେବେ ? ଗୋରୁ ?

ମୋ କଥା ଶୁଣି ବାପା ହସିଲେ । କହିଲେ––"ହଇରେ ବାଳୁଙ୍ଗା, ଗୁରୁମାନଙ୍କୁ ଗୋରୁ କହନ୍ତି ବୋଲି ତତେ କିଏ କହିଲା ?"

"ତମ କଲେଜ ପିଲାମାନେ କହିଲେ ।"

"ଗୁରୁମାନେ ଗୋରୁ ହେଲେ, ଛାତ୍ରମାନେ କ'ଣ ହେବେ ?"

"ତମେ ଜାଣିନ କି ? ଛାତ୍ରମାନେ ଛତରା ।"

ବାପା ପୁଣି ହସି କହିଲେ—ଆଉ ଛତରାମାନଙ୍କର କାମ ହେଲା ଗୋରୁମାନଙ୍କୁ ବାଡ଼ିରେ ପୂଜା କରିବା । ଏଇଆ ତ ? ଯା' ହଉ, ପୁଅ ଆମର କେତେକଥା ଶିଖିଲାଣି । ବାପା ପାଇଁ କେବେ ବାଡ଼ି ଧରୁଛୁ, ଦେଖିବା ।" ତାଙ୍କ କଥା ଶୁଣି ମତେ ଲାଜ ଲାଗିଲା । ମୁଁ ତଳକୁ ମୁହଁ କଲି ।

ସେ କ'ଣ ବୁଝିଲେ କେଜାଣି, କହିଲେ—ବାପାରେ ଆଜି ବି ଶିକ୍ଷକ ଅଛନ୍ତି, ଯୋଉମାନେ ପୂଜା ପାଇବାପାଇଁ ଯୋଗ୍ୟ । ସେମାନେ ଛାତ୍ରଛାତ୍ରୀ-ମାନଙ୍କୁ ନିଜ ନିଜର ପୁଅଝିଅଙ୍କଠାରୁ ଅଧିକ ଭଲପା'ନ୍ତି । ଶ୍ରଦ୍ଧାର ସହିତ ପଢ଼ାନ୍ତି । ପଢ଼େଇବା ଯେମିତି ସେମାନଙ୍କର ଜୀବନ । ମୁଁ ଦେଖିଛି । ସେମାନେ ହିଁ ପ୍ରକୃତ ଗୁରୁ । ଆଜି ବି ଛାତ୍ର ଅଛନ୍ତି, ଯୋଉମାନେ ପାଠ ପଢ଼ନ୍ତି, ଶିକ୍ଷକମାନଙ୍କୁ ଭକ୍ତି, ସେବା, ଭୟ ବି କରନ୍ତି । ସେମାନେ ପ୍ରକୃତ ଛାତ୍ର । ମାତ୍ର ସେମାନଙ୍କ ସଂଖ୍ୟା ବହୁତ କମ୍ । ଯୋଉ ଛାତ୍ର ଉପରେ

ଗୁରୁଙ୍କର ଆଶୀର୍ବାଦ ଥିବନା, ସେ ନିଶ୍ଚିତଭାବରେ ବଡ଼ ମଣିଷ ହେବ । ତୁ ପ୍ରାର୍ଥନା ବୋଲୁନା—

"ଗୁରୁଙ୍କୁ ନ ମଣିବ ନର
ଗୁରୁ ହିଁ ସାକ୍ଷାତ ଈଶ୍ୱର ।"

ଯୋଉମାନେ ସ୍କୁଲରେ ପଢ଼ାନ୍ତି ସେମାନେ କେବଳ ଗୁରୁ ନୁହନ୍ତି । ଆମେ ସମସ୍ତଙ୍କଠାରୁ କିଛି ନା କିଛି ଶିଖୁ । ଜହ୍ନ, ପିମ୍ପୁଡ଼ି, ବଉଳା ଗାଈ, ସାପ, ବେଙ୍ଗ, ଠେକୁଆ, ସିଂହ, ବାଘ, ଭାଲୁ, ସାହାଡ଼ାଗଛ, ପଦ୍ମଫୁଲ, ତୁଳସୀଗଛମାନଙ୍କ ଗପ ତ ଶୁଣିଛୁ । ଆମେ ସେମାନଙ୍କଠାରୁ ଅନେକ କଥା ଶିଖୁନୁ କି ? ଯିଏ ଆମକୁ ଶିଖାଏ—ସେ ଗୁରୁ । କ'ଣ ବୁଝୁଚୁ ତ ?

ମୁଁ ହଁ କହିଲି ।

"ଆମେ ଆମ ଆଖି ଆଗରେ ଯାହାକୁ ଦେଖୁଚୁ ସମସ୍ତେ ଆମର ଗୁରୁ । ଅଥଚ ସମସ୍ତେ ଖାଲି ବଡ଼ ପାଟିରେ ଆମକୁ ବୁଝାନ୍ତି ନାହିଁ । ଆମକୁ କିଛି ତୁଣ୍ଡ ଖୋଲି କହନ୍ତି ନାହିଁ । ଆମେ ସେମାନଙ୍କୁ ଦେଖି ଏବଂ ସେମାନଙ୍କ-ଠାରୁ ଶିଖୁ । ତୁ ସେମାନଙ୍କୁ ଭଲପାଆ, ଭକ୍ତି କର—ସେମାନେ ତତେ ଭଲପାଇବେ, ସ୍ନେହ କରିବେ । ତୁ ଚଗଲାମି କଲେ—ସମସ୍ତେ କହିବେ, ଲିଟୁ ଏକ ଦୁଷ୍ଟ ବାଳକ ।"

"ମୁଁ କାହିଁକି ଦୁଷ୍ଟ ହେବ ? ମୁଁ ତ ଭଲ ପିଲା । ସାର୍‌ମାନେ ମତେ ବେଶୀ ଭଲ ପା'ନ୍ତି । ସବୁକଥାରେ ଖାଲି ଲିଟୁ ଲିଟୁ ହଅନ୍ତି । ମତେ ସବୁଆଡ଼କୁ ପଠାନ୍ତି । ଆଜି ମତେ ସେମାନେ ଖରାପ ଭାବଥିବେ । କହିବେ—ଲିଟୁଟା ଏମିତି ଯେ, ଗୁରୁଦିବସରେ ରହିଲାନି । ଏଇଟା ଭାରି ଖରାପ କଥା । ତମେ ମତେ ତମ ପିଲାଙ୍କ ପରି ଭାବିଲ ।"

"ହଉ ବାପା । ଠିକ୍ ଅଛି, ଆରବର୍ଷକୁ ଆଉ ସେମିତି ହବନି ।"

"ହୁଁ, ଏ ବର୍ଷ ତ ଗଲା, ଆଉ କୋଉ ଆସିବ ଯେ ? ଆରବର୍ଷ କ'ଣ ହବ ତମେ କେମିତି ଜାଣିଲ ? ମତେ ଖାଲି ଭୁଲେଇଦଉଚ ।

ବାପା ଭାରି ବୁଦ୍ଧିଆ । ଏମିତି ବୁଝେଇସୁଝେଇ କଥା କହିବେ ଯେ, ତାଙ୍କୁ ଆଉ କିଛି କହିହବନି ।

ମୁଁ କିଛି କହିଲିନି ସିନା—ହେଲେ ସ୍କୁଲ କଥା ଭାରି ମନେ ପଡ଼ୁଥିଲା ।

## ॥ ତେର ॥

ଏ ଦାଇ ଦାନ ହେଲା ଝୁଲୁଟା ଆମ ସମସ୍ତଙ୍କୁ ହଇରାଣ କରୁଛି । ଯାହା କହିଲେ କିଛି ବୁଝିପାରୁନ । ମୂର୍ଖଟା ।

କାଲି ବୋଉକୁ ଚେୟାରରେ ବସେଇ ସମସ୍ତଙ୍କ ସାଙ୍ଗରେ ତା ଫଟୋ ଉଠୋଉଥିଲାବେଳେ ଏବଂ ତାକୁ ବାନ୍ଧିବାନ୍ଧି ମଶାଣିକୁ ନେଇ ଗଲାବେଳେ ସେ ବଲବଲ କରି ଖାଲି ସମସ୍ତଙ୍କ ମୁହଁକୁ ଚାହୁଁଥିଲା । କିଛି ବୋଲି କିଛି ଜାଣିପାରୁ ନ ଥିଲା । ବୋଧହୁଏ ଭାବୁଥିଲା—ସେମାନେ ତାକୁ ଡାକ୍ତରଖାନା ନେଇଯାଉଚନ୍ତି । ଭଲ ହେଇଗଲା ପରେ ପୁଣି ଆସିବ । ମାତ୍ର ମଶାଣିରେ ସବୁ କାମସାରି ସମସ୍ତେ ଯେତେବେଳେ ଫେରିଆସିଲେ, ତାକୁ ଆଉ ସାଙ୍ଗରେ ଆଣିଲେନି, ସେ ମା'କୁ ବୋଉ କୁଆଡ଼େ ଗଲା ବୋଲି ପଚାରିଲା ।

ମୁଁ ତାକୁ କହିଲି—ବୋଉ ପରା ମରିଗଲା, ଆମେ ତାକୁ ପୋଡ଼ିଦେଇ ଆସିଲୁ, ସେ ମୋ କଥାକୁ ଜମାରୁ ବିଶ୍ୱାସ କଲାନି । ମୋତେ ମିଛୁଆ ବୋଲି ଗାଳିଦେଲା । ପିଠିରେ ବିଧା ଚାପୁଡ଼ା କଷିଦେଲା । ବାଳଟିଙ୍କି ଗଡ଼େଇପଡ଼େଇ ମାଇଲା ।

ମା'କୁ ଯାଇ ପଚାରିଲା—ମାଆଲୋ, ବାପା କ'ଣ ବୋଉକୁ ନେଇ ପୋଡ଼ିଦେଲେ । ମଣିଷକୁ କିଏ କ'ଣ ପୋଡ଼େକି ? ନନା କହୁଚି—ତାକୁ ପୋଡ଼ିଲାବେଳେ ସେ ଠିଆହେଇ ଦେଖୁଥିଲା । ତତେ ପୋଡ଼ିଦେଲେ କାନ୍ଦିବନି ? ତୁ କାନ୍ଦିବୁନି ? ନନାଟା ସୁଉଦୁ ମିଛୁଆ । ଡାକ୍ତରଖାନାରୁ ସେ କେତେବେଳେ ଆସିବ ? ସମସ୍ତେ ଆସିଲେ, ତାକୁ କାଇଁକି ଆଣିଲେନି । ଆମେ ଆଉ ଟିକେ ପରେ ତାକୁ ଜଗିବାକୁ ଯିବାନା ? ସେ ଶୀଘ୍ର ନ ଆସିଲେନା ବାପାଙ୍କୁ ଘରୁ ବାହାର କରିଦେବ । ଭାରି ବାପା ହେଇଚନ୍ତି ।

ମା' ତାକୁ କୋଳେଇ କହିଲା—ନନାଟା ମିଛ କଉଛି । ବାପା କାଇଁକି ତାକୁ ପୋଡ଼ିଦେବେ ? ସେ ଆସିବ ଯେ ରହ । ତୁ ଶୋଇପଡ଼୍, ଦେଖିବୁ । ଚଗଲାମି କରନା ।

ଶୋଇବା ପର୍ଯ୍ୟନ୍ତ ସେ ପଚାରୁଥିଲା—ବୋଉ କେତେବେଳେ ଆସିବ, ମୁଁ ଦୁଧ ଖାଇବି । ସେ ନ ଆସିଲେ ମୁଁ କିଛି ଖାଇବିନି । ଆସିଲେ, ମତେ ଉଠେଇଦବୁ ।

ସତକୁ ସତ ସେ ନ ଖାଇ ଶୋଇପଡ଼ିଲା । ଆଉ ସାରା ରାତି ବୋଉ ବୋଉ ବୋଲି ଡାକୁଥିଲା । ବୋଉ ପାଖରେ ନ ଶୋଇଲେ ତ ତାକୁ ନିଦ ହୁଏନା । ଆଉ କ'ଣ କରନ୍ତା ସେ ?

ବଡ଼ଭୋରୁ ଉଠି ଦୁଆରମୁହଁରେ ବସି ସେ ପୁଣି ତାକୁ ଖୋଜିଲା । ବୋଉକୁ ଦାଣ୍ଡଖରକା କାମରେ ସାହାଯ୍ୟ କରିବା ଥିଲା ତା'ର ସବୁଦିନର ସକାଳୁଆ କାମ । ତା ପିଠିରେ ନାଉ ହେଉଥିବ, କାନି ଧରି ଟାଣୁଥିବ ଆଉ ସୁଯୋଗ ଦେଖି ଦିଦି ଟିକେ ଖାଇ ଦଉଥିବ । ସେ ଦାନ୍ତଘଷେଇ ଖୁଆଇ ନ ଦବା ପର୍ଯ୍ୟନ୍ତ ତାକୁ କୋଉ କାମ କରେଇଦବନି ।

ସକାଳୁ ବାପା ବାରିଆଡ଼ ନଡ଼ିଆ ଗଛମୂଳେ କଦଳୀପତ୍ର ଉପରେ ଦାନ୍ତକାଠି ରଖିଲେ । ଚଉପଡ଼ରେ ପାଣିଦେଲେ । ନମସ୍କାର କରି ଘରକୁ ଆସିଲେ । ଟୁଲୁ ସବୁ ଦେଖୁଥିଲା । ମା'କୁ ପଚାରିଲା—ମା'ଲୋ, ବାପା ସେଠି ଦାନ୍ତକାଠି ପାଣି ରଖି ନମସ୍କାର କାହାକୁ ହେଲେ ?

ମା' କହିଲା—ବୋଉପାଇଁ ରଖିଦେଇ ଆସିଲେ ପରା । ସେ ଏଇକ୍ଷିଣା ଭାରି ରାଗିଛି । ଆମ ପାଖକୁ ଆସିବନି । ସେଇଠି ଆସି ଦାନ୍ତ ଘଷିବ । ଖାଇଦେଇ ଯିବ ।

ଟୁଲୁଟା ଏତେ ଏକଜିଦିଆ ଯେ, ଯାହା ବୁଝିଥିବ ସେୟା । ରାଗ ଥଣ୍ଡା ନ ହେବା ପର୍ଯ୍ୟନ୍ତ କାହାରି କଥା ଶୁଣିବନି । ଚୁପ୍ ଚୁପ୍ ଯାଇ ଗୁହାଳ ପାଖ ପିଣ୍ଡାରେ ବସିଲା । ଏକ ଲୟରେ ଚାହିଁରହିଲା ବାରିଆଡ଼କୁ । ମୁଁ କି ମା' ଯେତେ ଡାକିଲେ ବି ଉଠିଲାନି ।

ବହୁତ ବେଳ ବସିରହିଲା ପରେ କ'ଣ ଭାବିଲା କେଜାଣି, ବାପା ଦେଇଆସିଥିବା ଦାନ୍ତକାଠି, ପାଣି, ପତ୍ର ପାଖରେ ଯାଇ ମୁଣ୍ଡରେ ହାତ ଦେଇ ବସିଲା । ମା' ଯେମିତି ଯାଇ ତାକୁ କାଖେଇଛି, କହିଲା—ସବୁତ ସେମିତି ଥୁଆ ହେଇଛି । ସେ ଆସୁନି । ତୁଟା ମିଛେଇ ।

ମା' ତାକୁ ଭୁଲେଇବାକୁ ଯାଇ କହିଲା—ବୋଉଟାନା ଭାରି ରାଗିଲାନି । ସେ ଜାଣିଦେଲା ତୁ ତାକୁ ଜଗିଚୁ ବୋଲି । ସେଇଥିପାଇଁ ଆସିଲାନି । ତା ବୁଢ଼ା ପାଖକୁ ନ ଆସି ସେ ରହିପାରିବ ?

—ମତେ ଦିଦି ଦବନା ?

—ତା ବୁଢ଼ାକୁ ନ ଦେଇ କାହାକୁ ଦବ ? ଚାଲ, ଦାନ୍ତ ଘଷେଇ ଦେବ । ଖାଇବୁ । ନଇଲେ ବୋଉ କାନ୍ଦିବ । କହିବ—ମୋ ବୁଢ଼ାଟା ଦୁଷ୍ଟ ପିଲା । ଚାଲ ।

ବୁଢ଼ାକୁ ଭାରି ଭୋକ ହଉଥିଲା ତ । ମା' କଥା ନ ମାନି ଯା'ନ୍ତା କୁଆଡ଼େ ? ସୁନାପିଲାଟି ପରି ଖାଇଲା ।

ଗାଧୁଆବେଳେ ବାପା ପୁଣି ସେଇ ଜାଗାରେ ଭାତ, ତରକାରି ଥୋଇଦେଇ ଆସିଲେ । ଝୁଲୁବୁ ତା ଜାଗାରେ ଯାଇ ବସିପଡ଼ିଲା । ମା' ଆଉ ସମ୍ଭାଳିପାରିଲାନି । ସାଙ୍ଗେ ସାଙ୍ଗେ ଯାଇ ତାକୁ କାଖ କରି କହିଲା—ତୁ ଜଗିଲେ ବୋଉ ଆଉ ଜମା ଆସିବନି । ତାକୁ ନାଜ ଲାଗୁଛି । ନ ଖାଇଲେ ତାକୁ ଭୋକ କରିବନି । ଚାଲ, ତୁ ଖାଇସାରି ଆସି ଦେଖିବୁ, ସେ ସବୁ ଖାଇଦେଇଯାଇଛି । ଚାଲ ।

ବୋଉ ସବୁଦିନେ ତାକୁ ଖୁଆଇଦିଏ । ଆଉ କିଏ ଖୁଆଇଦେଲେ, ଅଇନି କରେ । କଥା ମାନେନା । ମା' ତାକୁ ଥାଳି ପାଖରେ ବସେଇ ଖୁଆଇଦେଲା । ସୁନାପିଲାଟି ପରି ସେ ସବୁଯାକ ଭାତ ଖାଇଦେଲା । ଖାଇ-ସାରିବା ମାତ୍ରକେ ଆସି ପହଞ୍ଚିଗଲା ତା ବସିବା ଜାଗାରେ ।

ସେ ଫେରିଲାବେଳକୁ ବାପା ଦେଇଯାଇଥିବା ଭାତ କି ତରକାରି ଆଉ ପତ୍ରରେ ନ ଥିଲା । ସାଙ୍ଗେ ସାଙ୍ଗେ ସେ ବିଜୁଳିବେଗରେ ଘରକୁ ଦୋଉଡ଼ିଯାଇ ମା'କୁ କହିଲା—ମା'ଲେ, ବୋଉଟା ଭାରି ଦୁଷ୍ଟ । ପତ୍ର ଚାଟିଚୁଟି ସଫା କରିଦେଇଯାଇଛି । ଆଜି ହଗିହବ । ହଉ । ସବୁ କାହିଁ ଖାଉଥିଲା କି ? ଏଥର ଆସିଲେନା, ଜମାରୁ ଛାଡ଼ିବିନି । ଦଦ ଦାଇଟା କାଟିକରି ରଖିଦେବି । କୁଆଡ଼େ ଯାଉଛି ଯାଉ । ଏକୁଟିଆ ଖାଇଦେଇଯାଉଛି । ଭାରି ଖେଚଡ଼ ହେଇଗଲାଣି ।

ତା କଥା ଶୁଣି ଆମେ ସମସ୍ତେ ହସିଲୁ । ସେଇଟା ଏତେ ଦଦରଙ୍କୁଣା ଯେ, ବୋଉ ଚୁଟ୍‌ଗୃପ୍ ଶୋଇ ପଡ଼ିଥିଲାବେଳେ ସେ ତା ଲୁଗାଟେକି ଦଦ ଖାଇଦେଲା । ମା' ଭାଗବତ ପଢ଼ୁ ପଢ଼ୁ କାନ୍ଦି ପକେଇଲା । ବାପା ତାକୁ ଟେକି ଆଣିଲେ । ଉଷାମା ତ ଘର ଭିତରୁ ବାହାରକୁ ପଳେଇଆସିଲା ।

ମୁଁ ଆଉ କୋଉ ଭଲ ପିଲା କି ? ଯେତେବେଳେ ମନ ହୁଏ, ତା ଦଦରେ ହାତ ମାରିଦିଏ । ପାଟିରେ ପୂରେଇଦିଏ । ମା'ଟି ଏଡ଼େ ବଢ଼ି

ହେଲଣି, ସେ ବି ଗୁଡ଼େନା । ତାକୁ କେମିତି ଲାଜ ଲାଗେନା କେଜାଣି ? ଆମେ ତାକୁ ଚିଡ଼େଇଲେ, ହସିଦିଏ । ବୋଉ କହେ—ପାଗଳୀଟା ।

ବୋଉ କାହିଁକି ମରିଗଲା ଯେ ? ବଞ୍ଚିଥିଲେ କ'ଣ ହେଇ ନ ଥା'ନ୍ତା । ତା ବୁଢ଼ୀକୁ ଏତେ ପୂଜା କରୁଥିଲା, ଏତେ କଥା ଖାଇବାକୁ ଦେଉଥିଲା, ଏତେ କାନନାକ ମୋଡ଼ି ହେଉଥିଲା, ସେ କାହିଁକି ତାକୁ ଭଲ କରିଦେଲାନି ଯେ ? ତାକୁ ବଞ୍ଚେଇଦେଲାନି । ଆମେ ହଇରାଣ ହେବୁ ବୋଲି ସେ କ'ଣ ଜମାରୁ ଜାଣିପାରୁ ନ ଥିଲା । ସେ ଯେମିତି, ତା ବୁଢ଼ୀବି ସେମିତି । ଘର ମିଛେଇଗୁଡ଼ାଏ ।

ତା ଦେହ ତ ସବୁବେଳେ ଖରାପ ହେଉଥିଲା । ଅଣ୍ଟା ଭାଙ୍ଗି ଯାଇଥିଲା ଯେ, ସିଧା ଠିଆ ହେଇପାରୁ ନ ଥିଲା । ନଇଁ ନଇଁ ଚାଲୁଥିଲା । ପେଟରେ ଘା' ହେଇଥିଲା ଯେ, ଔଷଧ ଖାଇ ଭଲ ହେଲାନି । ପେଟ କଟା ହେଲା । ପେଟରେ ଘା' ନ ହେଇ ଆଉ କ'ଣ ହ'ନ୍ତା ଯେ ? ପାନଗୁଣ୍ଡି ତ ସବୁବେଳେ ଖାଇଲାନା । ବାପା ଯେତେ ମନାକଲେ, ଗାଳିଦେଲେ, ମୋଟେ ତାଙ୍କ କଥା ମାନିଲାନି । ମୋତେ, ଆଉ ବାପା, ବାସୁମାମୁ, ଉଷାମା ସମସ୍ତଙ୍କୁ ପାନଗୁଣ୍ଡି ଆଣିବାକୁ କହୁଥିଲା । ଗୁଣ୍ଡି ଡବା ତା ବିଛଣା ତଳେ ଲୁଚେଇ ରଖିଥିଲା । ବାପାଙ୍କୁ ଲୁଚେଇ ଲୁଚେଇ ଖାଉଥିଲା । ମୁଁ ତାକୁ ସବୁବେଳେ ଧମକାଉ-ଥିଲି—ରହ ବାପା ଆସନ୍ତୁ କହିଦେବି ଯେ, ତୁ କୋଉଠି ଗୁଣ୍ଡି ଲୁଚେଇ ରଖିଚୁ । ସେ ମତେ ଓଲଟି ଧମକେଇ କହୁଥିଲା—କହୁନୁରେ ଟୋକା, ମୁଁ କ'ଣ ତୋ ବାପାକୁ ଡରିଚି ? ତା ବାପାର ବାପା, ତାଙ୍କ ବାପାଙ୍କୁ ତ ଡରିନି । ଆଉ ଏ ମେଞ୍ଚଡ଼ ଟୋକାଖଣ୍ଡକ ମତେ କୋବଲେଉଚି ? ପାଟି ପିତା ହେଇଯାଉଚି ବୋଲି ଏଥିରୁ ଟିକେ ଖାଇଦଉଚି । ତୁ ତ କେତେ ଜିନିଷ ଖାଉଚୁ । ମୁଁ ତତେ ଗୁହରିଦେବିନା । ରହ ଟୋକା ।

ମୁଁ କହେ—ବୋଉଲୋ, ପାନଗୁଣ୍ଡି ନ ଖାଇଲେ କ'ଣ ପାଟି ପିତା ମରିଯାଏ ? ଆମର କିଛି ହଉନି ତ ? ତୋର କେମିତି ହଉଚି ? ତୋ ପାଟିରେ କ'ଣ ଅଛି କି ?

ସେ କହେ—ଖଟା, ମିକ୍‌ଚର, ଚନା, ଗୁଡ଼, ଚକୋଲେଟ୍ ନ ଖାଇଲେ ତୋ ପାଟି ପିତା ମାରିଯାଏନା ? ଚା' ନ ପିଇଲେ ତୋ ବାପା

ପାଟି କ'ଣ ହେଇଯାଏ ଜାଣିଚୁଟି ? କାହାକୁ ବସେଇଉଠେଇ ଦିଏନାଟି ? ସେ ନିଜେ ତା ଟୁଁ' ବନ୍ଦ କରିବନି, ମତେ କହିବ—ଗୁଣ୍ଡି ଖା'ନା ।

ମୁଁ କହେ—ବୋଉଲେ, ବଡ଼ ଲୋକମାନେ ଖାଲି କହନ୍ତି । କହିବା ତାଙ୍କ କାମ । ନିଜେ କିଛି କରନ୍ତିନି । ବାପା ମତେ କହନ୍ତିନି ଚକୋଲେଟ୍, ଚିନି ଖାଇଲେ ଦାନ୍ତ ପୋକ ଖାଇଯିବ । ଭୁ ତ ସବୁବେଳେ ତାଙ୍କ ଉପରେ ବିରକ୍ତ ହେଉ ସେ ବେଶୀ ଟୁଁ' ପିଉଚନ୍ତି ବୋଲି । ଟୁଁ' ପିଇଲେ ପେଟ ଶୁଖିଯାଏ । ସେ କ'ଣ ମାନୁଚନ୍ତି କି ? ଏତିକି କ'ଣ ଜାଣିପାରୁ ନାହାନ୍ତି ? ଦେଖୁନୁ ସବୁବେଳେ ଖାଲି ପଢ଼ୁଛନ୍ତି, ଲେଖୁଚନ୍ତି । ବେଶୀ ପଢ଼ିଲେ ଆଖି ଖରାପ ହେଇଯାଏନା କି ? ଏଡ଼େ ମୋଟା ଚଷମା ପିନ୍ଧିଲେଣି । ତୋ କଥା କ'ଣ ମାନୁଚନ୍ତି ? କି ଯେ ବାପା ।

ବେଶି ଗୁଣ୍ଡି ଖାଇଲେ ବୋଉର ପେଟ ମୋଡ଼ମାଡ଼ ହୁଏ । ଅଇ ଉଠେଇ ବାନ୍ତି ହୁଏ । ତଥାପି ସେ ଖାଏ । ମା' ତାକୁ ମନା କରିପାରେନା । ଆମେ ବି କେହି ବାପାଙ୍କୁ ସେ କଥା କହିପାରୁନା । ଦିନେ ବିଛଣା ଝାଡ଼ୁ ଝାଡ଼ୁ ବାପାଙ୍କ ପାଖରେ ତା ଗୁଣ୍ଡିଡବା ଧରା ପଡ଼ିଗଲା । ସେ ବୋଉକୁ କ'ଣ କହିବାକୁ ଯାଉଥିଲେ । ହେଲେ, ମା' ତାଙ୍କୁ ଚୁପ୍ ଚୁପ୍ କରି କ'ଣ କହିଲା ଯେ, ସେ ଆଉ କିଛି କହିଲେନି ।

ପେଟ କଟା ହେଲା ପରେ ବି ବୋଉ ଗୁଣ୍ଡି ଖାଇଲା । କଡ଼ା ଗୁଣ୍ଡି । ଘାଆ ଆଉ ଭଲ ହେଲାନି । ଯାହା ଖାଇଲା ବାନ୍ତି ହେଲା । ସବୁଦିନେ ତା ଦେହରେ ଇଞ୍ଜେକ୍‌ସନ୍ ଫୋଡ଼ାହେଲା । ରକ୍ତ, ସାଲାଇନ ଦିଆହେଲା । ସବୁବେଳେ ଡାକ୍ତରମାନେ ଆମ ଘରକୁ ଆସିଲେ । ତାକୁ ଦେଖିବାପାଇଁ କୁଆଡ଼ୁ କୁଆଡ଼ୁ କେତେ ଲୋକ ଆସିଲେ । ଡାକ୍ତର କହିଲେ—ତାକୁ କ୍ୟାନ୍‌ସର୍ ହେଇଚି । ଆଉ କାଳେ ବେଶୀଦିନ ବଞ୍ଚିବନି, କେଇଟା ଦିନ ପରେ ମରିଯିବ ।

ବାପା ଡାକ୍ତରଙ୍କ ସାଙ୍ଗରେ କଥା ହଉଥିଲାବେଳେ ମୁଁ ତାଙ୍କ ପାଖରେ ଠିଆ ହେଇଥିଲି । ସେ ମତେ ଯେମିତି ଦେଖିଚନ୍ତି—ସାଙ୍ଗେ ସାଙ୍ଗେ ପଦାକୁ ଡାକନେଇ କହିଲେ, ବୋଉକୁ କହିବୁନି ତାକୁ କ୍ୟାନ୍‌ସର ହୋଇଚି, ଶୀଘ୍ର ମରିଯିବ ବୋଲି । ସେ କାନ୍ଦିବ । ମୋ ଧନ, ଜମାରୁ କହିବୁନି । ସୁନାପୁଅଟା ପରି ।

ବାପାଙ୍କ କଥା ଶୁଣି ମୋ ମୁଣ୍ଡ ବୁଲେଇଦେଲା । ଦେହ କ'ଣ ହୋଇଗଲା । କାନ୍ଦ ଲାଗିଲା । ପ୍ରାୟ ସବୁବେଳେ ବୋଉ ପାଖରେ ବସୁଥିଲି । ତାକୁ ଆଉଁଶିଦେଉଥିଲି । ଗୋଡ଼ହାତ ମୋଡ଼ି ଦେଉଥିଲି । ତା ଦଦ ଖାଉଥିଲି । ସେ ମତେ କେତେ କଥା କହୁଥିଲା । ବେଶୀ କହୁଥିଲା ବାପାଙ୍କ କଥା । ସେ କେମିତି ଚଗଲା ହଉଥିଲେ । ସାନବାପା ମହିଁଆଁ ବାପାଙ୍କୁ କନ୍ଦେଉଥିଲେ । କେତେ କଷ୍ଟକରି ପାଠ ପଢ଼ୁଥିଲେ । ଜେଜେ ଗୃ' ପିଉଥିଲେ ବୋଲି ତାଙ୍କୁ କେମିତି ଗାଳି ଦେଉଥିଲେ । ତା କଥାଗୁଡ଼ାକ ଶୁଣିବାଲାଗି ଭାରି ଭଲ ଲାଗୁଥିଲା । ସେ ମତେ ଗେଲ କରୁଥିଲା । ମୋଡ଼ି ଦେଉଥିଲା । ମୁଣ୍ଡ ଆଉଁଶି-ଦେଉଥିଲା । କୋଡ଼ରେ ପୂରେଇ ଶୋଇଯାଉଥିଲା । କହୁଥିଲା ଚଗଲା ହବୁନି । ଭଲ ପାଠ ପଢ଼ିବୁ । ବାପା ମା'ଙ୍କ କଥା ମାନିବୁ । ଆମ ବଉଁଶର ନାଁ ରଖିବୁ ।

ବାପା, ମା' ରାଗରେ ମତେ ମାଇଲେ, ସାଙ୍ଗେ ସାଙ୍ଗେ ଦୋଉଡ଼ି-ଯାଉଥିଲା ତାଙ୍କ ପାଖକୁ । ବାପାଙ୍କୁ କୁଣ୍ଢେଇ ଧରୁଥିଲା । ନେହୁରା ହୋଇ କହୁଥିଲା—ମୋ ରାଣ, ବାଳୁତ ପିଲାଟାକୁ ଆଉ ମାରିବୁନି । ସେ କ'ଣ କରୁଛି, କିଛି ବୁଝିପାରୁନି । ଏମିତି ମାରିଲେ ସେମାନେ ନଇଁଯିବେ । ପଛରେ ଭାବିବୁ ଯେ । ଏମିତି କେତେ କଥା ।

ଔଷଧ ଖାଇ ଖାଇ, ଇଞ୍ଜେକ୍‌ସନ୍ ଆଉ ସାଲାଇନ୍ ଦେଇ ଦେଇ ସେ ବେଳେବେଳେ ଭାରି ବିରକ୍ତ ହେଉଥିଲା । ବାପା ବି ଦୋକାନରୁ ପେଟି ପେଟି ବୋତଲ ବୋହି ଆଣୁଥିଲେ । ତାଙ୍କୁ ବଡ଼ ବିକଳ ହୋଇ କହୁଥିଲା—ବାପାରେ, କାଇଁକି ଯେ ପେଟିଗୁଡ଼ାକ ବୋହି ଆଣୁଚୁ ? ହଜାର ହଜାର ଟଙ୍କା ପାଣିକି ଫୋପାଡ଼ି ଦଉଚୁ ? ଭବିଷ୍ୟତରେ ପିଲାଙ୍କପାଇଁ ଲାଗିବ । ମୁଁ ତ ବୁଢ଼ୀ ହେଲିଣି । ମୋର ଆଉ କ'ଣ ଅଛି ? ଆଉ ଏଗୁଡ଼ାକ ଜମାରୁ ଆଣିବୁନି । ମୁଁ ଠାକୁରାଣୀଙ୍କ ପାଦୁକା, ଧଣ୍ଡା ଖାଇ ଭଲ ହୋଇଯିବିନି ଯେ, ତୁ ଏତେ ବ୍ୟସ୍ତ ହଉଚୁ ? କାଲି ରାତିରେ ବୁଢ଼ୀ ଆସିଥିଲା । ମୋ ପାଖରେ ବସିଲା । ତା'ର କ'ଣ ହୋଇଥିଲା କେଜାଣି, କେତେଦିନ ହେଲା ଆସୁ ନ ଥିଲା । ମୋ ମୁଣ୍ଡ ଆଉଁଶିଦେଲା । କାନ୍ଦିବାକୁ ମନା କଲା । ତା ମନ ଭଲ ନାହିଁ । କେମିତି ଶୁଖିଲା ଶୁଖିଲା ଦିଶୁଥିଲା । ଖିରି ପୂଜାରେ ହେଳାକରୁଚ ବୋଧହୁଏ । ସେ ଆଉଁଶି ଦଉ ଦଉ ମୁଁ ଶୋଇପଡ଼ିଲି । କେତେବେଳେ ଗଲା

ଜାଣିପାରନ୍ତି । ଆଜି ଠିକେ ଭଲ ଲାଗୁଛି । ତାଙ୍କୁ ଏତେ ଡାକୁଛି । ସେ କ'ଣ ଏମିତି ନିଷ୍ଠୁର ହୋଇଛି ଯେ, ମୋ କଥା ଶୁଣିବନି ? ମୋର କିଛି ହୋଇନି । ତୁ ସବୁବେଳେ ମନ ଖରାପ କରୁଚୁ କାହିଁକି ? ଆଉରି ଦଶବରଷ ବଞ୍ଚିବି । ଘାଣ୍ଟି ଯାଇ ବାସ୍ତବରେ । ମତେ କେହି ନେଇପାରିବେନି । ଦେହ ଅଛି । ରୋଗବଇରାଗ ହବ । ତୁ କାତର ହ'ନା, ଭଲ ହୋଇଯିବି । ବୁଢ଼ୀ ଆସିଲାଣି, ଆଉ ଚିନ୍ତା ନାହିଁ ।

ଏଇ କେଇଦିନ ହେଲା ବାପାମା' ଜମା ବୋଉକୁ ପାଖରୁ ଛାଡ଼ୁ ନ ଥିଲେ । ବାପା ବାଁ ହାତରେ ତାଙ୍କୁ ଶୁଆଇ ପକାଉଥିଲେ । ମତେ ଯେମିତି ଶୁଆନ୍ତି, ଠିକ୍ ସେମିତି । ସେ ଶୋଇପଡ଼ିଲେ, ବୋଉ ଉଠୁଥିଲା । ତାଙ୍କୁ ଆଉଁଶି ଦଉଥିଲା । ଗୋଡ଼ହାତ ମୋଡ଼ି ଦଉଥିଲା । ବାପା ଯେତେ ମନାକଲେବି ମାନୁ ନ ଥିଲା । ତାଙ୍କୁ ମୋଡ଼ି ନ ଦେଲେ, ତା'ର ଯେମିତି ନିଦ ହଉ ନ ଥିଲା । ଅନେକ ସମୟ ପର୍ଯ୍ୟନ୍ତ ଚାହିଁ ରହୁଥିଲା ତାଙ୍କ ମୁହଁକୁ । ବେଳେବେଳେ କାନ୍ଦି ପକାଉଥିଲା । ବାପା କୋଉ ଭଲ ପିଲା କି ? ବୋଉ ହାତର ମୋଡ଼ା ନ ଖାଇଲେ, ତାଙ୍କର ଯେମିତି କ'ଣ ହୋଇଯାଏ ।

ଖାଲି କ'ଣ ବାପାଙ୍କୁ, ମା'କୁ ସେ ମୋଡ଼ି ଦଉଥିଲା । ତା ହାତ ଭାରି କାଟେ । ମା' ଉ ଉ ହେଲେ, ତାଙ୍କୁ ଆଉଁଶି ଦିଏ । ବେଳେବେଳେ ମା'କୁ ଚୁମାଦିଏ । ବଡ଼ ପିଲାଗୁଡ଼ାକ କେମିତି ଚୁମା ଦିଆଦେଇ ହ'ନ୍ତି କେଜାଣି । ମତେ ଲାଜ ଲାଗେ । ହସେ । ମା'କୁ ସେ ଡାକେ ଦୁଷ୍ଟୀ, ବାଘୁଣୀ, ପାଗେଲୀ । ସବୁଦିନେ ତାଙ୍କୁ ଖୁଆଇଦିଏ । ମା'ଟିକୁ ଲାଜ ଲାଗେନି କେମିତି କେଜାଣି ? ଏଡ଼େ ବଡ଼ଝିଏ ହେଲାଣି, ବୋଉ ହାତରୁ ନ ଖାଇଲେ ଯେମିତି ପେଟ ପୂରେନା । ଆମେ ସେ ଦିଇଜଣଙ୍କ ଚାରିପାଖରେ ତାଳିମାରି ନାଚୁ । ଦିଇଜଣଙ୍କ ଦିଦ ଖାଇଦଉ । ମା' ଆମକୁ ଧମକାଏ, ମାରେ । ବୋଉ ଆମକୁ କିଛି କହେନା । ଦିଦ ଘୋଡ଼େଇପକେଇ କହେ—ଛି, ବାପା ଆସିବେ । ବେଶୀ ଚଗଲା ହେଲେ କହିଦେବି, ବସେଇବ ଯେ, ରହ ।

ସାଲାଇନ୍ ଦେଲାବେଳେ ବୋଉର ବେଳେବେଳେ ଶିରା ମିଳୁ ନ ଥିଲା । ତା ଦେହସାରା ଛୁଞ୍ଚି ଫୋଡ଼ା ହଉଥିଲା । ତାଙ୍କୁ ଏତେ କାଣ୍ଟୁଥିଲା ଯେ, ଖାଲି ଚାଁ ଚାଁ ହଉଥିଲା । ବେଳେବେଳେ ଛୁଞ୍ଚିକୁ ଝିଙ୍କି ବାହାର କରି ଦଉଥିଲା । ଛୁଞ୍ଚି ଫୋଡ଼ିଲାବେଳେ ବାପା ଜମା ତା ପାଖରେ ରହିପାରୁ

ନ ଥିଲେ । ବାହାରକୁ ପଳେଇ ଯାଉଥିଲେ । ଏକଦମ୍ ଡରୁଆ । ବୋଉ ତ କିଛି ବୋଲି ଖାଇପାରୁ ନ ଥିଲା । ଦିଇ ଚାରିଘଣ୍ଟା ପରେ ପୁଣି ବାନ୍ତି କରୁଥିଲା । ପେଟରେ ପାଣି ଟୋପିଏ ବି ରହିପାରୁ ନ ଥିଲା । ସେ କ'ଣ ଜାଣିପାରୁ ନ ଥିଲା ମରିଯିବ ବୋଲି ? ବାପାମା' ମନ ଦୁଃଖ କରିବେ ବୋଲି, ସବୁ ଜାଣି ବି କିଉ ନ ଥିଲା ?

ବୋଉଟା ଭାରି ମିଛେଇ । ମା' ଖଟା, ଲଙ୍କା ଖାଇଲେ ବାପା ତା ଉପରେ ବିରକ୍ତ ହୁଅନ୍ତି । ହେଲେ ବୋଉ କେତେ ପ୍ରକାରର ଖଟା ତିଆରି କରି ତାକୁ ଖାଇବାକୁ ଦିଏ । ବାପା ପଚାରିଲେ କହେ––ଆମେ କ'ଣ ଖାଇଲୁ ନ ଖାଇଲୁ ତୁ କିଏ କହିବାକୁ ? ଖଟା ଟିକିଲୁ ବି ଜଗୁଚି । ଆଖି ଫାଇଚି ତ । ବାପା କୁଆଡ଼େ ଚାଲିଗଲେ, ମୁଁ ଜମା ପଡ଼େନା । ଖେଳେ । ଖଟା, ମିକ୍ସ୍‌ଚର, ଚନା, ଅମୁଲ ଖାଏ । ବାପା ପଚାରିଲେ––ପିଲାଗୁଡ଼ାକ ଖେଳିବେନି ତ ସବୁବେଳେ କ'ଣ ଖାଲି ପଢ଼ୁଥିବେ ? ବୁଢ଼ା ହେଲେ ଖେଳିବେ ? ତୋ କାମ ତୁ କରୁନୁ, ତାଙ୍କ ସାଙ୍ଗରେ କାଇଁକି ଲାଗିଚୁ ? ବାପା ବେଶୀ ଚିଡ଼ିଗଲେ କହେ––ଆଉ ପାଟି କଲେ ମାଡ଼ିଦେବି ଜାଣିଥା । ଆରେ, କିଛି ନ କହିବାରେ ଯା ମୁହଁ ପାଇଗଲାଣି । ମୋ ପେଟରୁ ଜନମ ହେଇ ମତେ ଧମକେଇବୁ ? ତୋର ଏଡ଼େ ସାହସ ? ମୁଁ ମରିଗଲା ପରେ ଯାହା କରିବୁ । ବଞ୍ଚିଥିଲାତକ ତୋ ଶାସନ ଏଠି ଚଳିବନି, ଖବରଦାର ।

ରାଗିଗଲେ ବାପା କିଛି କହିପାରନ୍ତିନି । ଖାଲି ଚା' ପିଅନ୍ତି, ସୁଉଦୁ ମିଛ କଥାଗୁଡ଼ାକ ସତ ହେଇଯାଏ ।

ବୋଉ ଜାଣିଥିଲା ମରିଯିବ ବୋଲି । ବାପାମା' ମନଦୁଃଖ କରିବେ ବୋଲି ମିଛ କହୁଥିଲା । ଏତେ ବୁଦ୍ଧିଆ, ଏତିକି କ'ଣ ଜାଣି ନ ଥିଲା ?

ତା ଦେହଟା ଏତେ ଖରାପ, ହେଲେ ଜମାରୁ ଚୁପ୍‌ଚାପ୍ ବସିପାରୁ ନ ଥିଲା । ଶାଗ ବାଛିବ, ପରିବା କାଟିବ, ଚାଉଳ ଧୋଇବ, ଘରଦୁଆର ଝାଡ଼ିବ । ନିଜ କାମ ନିଜେ କରୁଥିବ । ଏମିତି ଘଷିମାଜି ହେଇ ଗାଧୋଇବ ଯେ, ଦେହରେ ଟିକିଏ ମଳି ରହି ନ ଥିବ । ମତେ, ଟୁଲୁ, ମା'କୁ ଗାଧୋଇଲାବେଳେ ରଗଡ଼ି କରି ଘଡିଘାଣ୍ଟି ଦେବ । କାମ କରିବାକୁ ମନା କଲେ ଜମା ମାନିବନି । ଓଲଟି ବିରକ୍ତ ହେଇ କହିବ––ଖାଲିଟାରେ ବସିଲେ ମଣିଷର ଆଇଷ କମିଯାଏ । କେତେ ବୁଦ୍ଧି । କାମ ନ ଥିଲାବେଳେ ଗପ

କହିବ । ଟେପ୍ ଲଗେଇ ଗୀତ ଶୁଣିବ । କେତେ ଗୀତ, କେତେ ଗପ ଜାଣିଚ କେଜାଣି ?

ପଅରଦିନ ରାତିରେ ସେ ବାପା, ମା'ଙ୍କୁ କେତେ କଥା ଗପୁଥିଲା । ତାଙ୍କ ମାମୁଘର, ଜେଜାମାଘର କଥା କହୁଥିଲା । ବାପା ଗାଁକୁ ଯିବାପେଇଁ କହିଲେ ଯେ, ମନାକଲା । କହିଲା—ବୁଢ଼ୀର ପୂଜାବେଳକୁ ଯିବା । ଆଉ କାଲି ତା ଦେହ ଯେତେବେଳେ ବେଶୀ ଖରାପ ହେଲା, ବାପା ଯେମିତି ଘରକୁ ଯିବାପାଇଁ କହିଚନ୍ତି, ସାଙ୍ଗେ ସାଙ୍ଗେ ରାଜି ହେଇଗଲା । ବାପା ରାତିରେ ଯାଇ ଗାଡ଼ି ଠିକ୍ କରିଆସିଲେ । ଆମେ ସକାଳୁ ବାହାରିପଡ଼ିଲୁ । ତା'ର ତ କ୍ୟାନ୍‌ସର ହେଇଚି ବୋଲି ସମସ୍ତେ ଜାଣିଥିଲେ । ଯେମିତି ବାହାରିଚୁ, କନ୍ଦାକଟା ଆରମ୍ଭ ହେଇଗଲା । ଗାଡ଼ିରେ ବସି ସେ ସମସ୍ତଙ୍କୁ କହୁଥାଏ— ଆରେ କାନ୍ଦୁଚ କାଇଁକି ? ମୁଁ ଟିକେ ଘରଆଡ଼େ ବୁଲାବୁଲି କରି ପଳେଇ-ଆସିବି ଯେ । ଘରକଥା ଲାଗିଲା ।

ବୋଉ କ'ଣ ସତରେ ଭାବିଥିଲା—ଭଲ ହେଇ ପୁଣି ଅନୁଗୋଳ ଫେରିବ ବୋଲି ? ନା, ସମସ୍ତଙ୍କୁ ସେମିତି ମିଛ କହୁଥିଲା ? ଭାରି ଚାଲାକ ।

ବାଟରେ ତା'ର କ'ଣ ହେଲା କେଜାଣି, ଆଉ କଥା କହିପାରିଲାନି । ଘରେ ପହଞ୍ଚିଲାମାତ୍ରେ ବାପା ତାକୁ ତା ବୁଢ଼ୀ ପାଖରେ ଶୁଆଇଦେଲେ । ସେ ବୁଢ଼ୀକୁ ଚାହିଁଲା । ଆଖି ବୁଜିଦେଲା । ତାକୁ ଟେକିଆଣିଲେ ଘର ଭିତରକୁ ।

ସେ ତା ବୁଢ଼ୀକୁ ଏତେ ଭଲ ପାଉଥିଲା । ସବୁବେଳେ ଖାଲି ବୁଢ଼ୀ ବୁଢ଼ୀ ହଉଥିଲା । ସେ କାଇଁକି ତାକୁ ଭଲ କରିଦେଲାନି ଯେ ? ତା ଜାତକରେ ତ ଲେଖା ହେଇଥିଲା ଆଉ ଦଶବର୍ଷ ବଞ୍ଚିବ ବୋଲି । ଦଶ ବରଷ ବଞ୍ଚିଥିଲେ କ'ଣଟା ଏମିତି ଖରାପ ହେଇଯାଉଥିଲା ? ସମସ୍ତେ ତ ବଞ୍ଚନ୍ତି, ସେ ମରିଗଲା କ'ଣ ପାଇଁ ? ଏତେ କଷ୍ଟ କରୁଥିଲା, ବାପା ଏତେ ଔଷଧ ଆଣୁଥିଲେ, ତଥାପି ବଞ୍ଚିଲାନି । ତା ବୁଢ଼ୀଟା ସୁଦ୍ଧା ମିଛୁଆ, ଭାରି ଖରାପ । ସେ ନିଜେ ତ ମିଛୁଆ, ତା ବୁଢ଼ୀ କାଇଁକି ତା'ର ପରି ନ ହବ ଯେ ? (ବୁଢ଼ୀ-ଠାକୁରାଣୀ) ।

ବାପାମା' ଠୁଲୁକୁ କ'ଣ କମ୍ ମିଛକଥା କଉଚନ୍ତି କି ? ଟିକି ପିଲାଟା ବୋଲି କିଛି ଜାଣିପାରୁନଥା । ମୋର ଆଗରେ ବାପା, ସାନବାପା, ବଡ଼-ବାପା, ହରିନନା, ବଜୟନନା, ମାଗୁଫାଦର, ମିଠାଅଜା ଘରକା ତାଙ୍କୁ

ପୋଡ଼ି ପକେଇଲେ । ତାକୁ ଗାଧୋଇଦେଇ ନୂଆ ଲୁଗା ପିନ୍ଧେଇଲେ । ବେଶ କରିଦେଲେ । ସେଇଠି ଭଙ୍ଗା ହାଣ୍ଡିରେ ଭାତ ରାନ୍ଧି ଭୋଗ କଲେ । ତା'ପରେ କଞ୍ଚା କାଠଗଦା ଉପରେ ତାକୁ ଶୁଆଇଦେଇ ନିଆଁ ଲଗେଇଲେ । ତା ଉପରେ ମତେ ଚନ୍ଦନକାଠ ପକେଇବାକୁ କହିଲେ । ମତେ ଏତେ କାନ୍ଦ ଲାଗିଲା ଯେ ଆଉ ସେଠି ରହିପାରିଲିନି । ଦୋଉଡ଼ି ଦୋଉଡ଼ି ଘରକୁ ପଳେଇ-ଆସିଲି । ଆଉ ସମସ୍ତେ ତାକୁ କହୁଚନ୍ତି—ବୋଉ ଯାଇଚି, ଆସିବ । ଲୁଚି ଲୁଚି ଆସୁଚି, ଦାନ୍ତ ଘଷୁଚି । ଖାଉଚି । ତା କାମ ସବୁ କରୁଚି । ସେ ପୁଣି ସବୁଲୋକଙ୍କୁ ଦେଖାଦବନି । ତାକୁ ଯିଏ ବେଶୀ ଭଲପାଏ, ତାକୁ ଦେଖାଦେବ ।

ଝୁଲୁଟା ଏମିତି ମୂର୍ଖ ଯେ, କିଛି ବୁଝିପାରୁନି । ସବୁବେଳେ ଯାଇ ଛପି ଛପି କରି ଦେଖୁଚି । କ'ଣଟା ଦେଖିବ—ଛେନାଗୁଡ଼ ? ମରିଗଲା ଲୋକ କ'ଣ ଫେରିଆସେ ? ଲୋକ କାଇଁକି ମରିଯା'ନ୍ତି କେଜାଣି ? ନ ମଲେ କ'ଣ ହ'ନ୍ତାନି ?

ମା'କୁ ପଚାରିଲି—ମା'ଲୋ, ବୋଉ ତ ମରିଗଲା । ଆମେ ତାକୁ ପୋଡ଼ିଦେଇ ଆସିଲୁ । ତୁ କାଇଁକି ଝୁଲୁକୁ ମିଛ କହୁଚୁ ? ସେ କ'ଣ ସତରେ ଆସି ଦାନ୍ତ ଘଷୁଚି, ଖାଉଚି ? ତମେସବୁ ଭାରି ମିଛେଇ, ମିଛୁଆ ।

ମା' କହିଲା—ଆମେ ସମସ୍ତେ ମିଛୁଆ, ମିଛେଇ, ଆଉ ତୁଇଟା ଏକା ସତଆ । ମିଛ କ'ଣ ଜାଣିନୁ ।

—ବୋଉ ଆସୁଚି ବୋଲି ତୁ ଦେଖିଚୁ ? ଭାତତରକାରି କାଉକୁକୁର ଖାଇଯାଉଚନ୍ତି, ଆଉ ସେ କହୁଚି—ବୋଉ ଖାଇଦେଇଯାଉଚି । କେତେଦିନ ଆଉ ଭୁଲେଇବ ? ଧରା ପଡ଼ିଯିବ ଯେ । ଠିକ୍ ବୋଉର ଗୁଣ୍ଡିପାନ ଖିଆ ଭଳିଆ ।

ମା' କହିଲା—ବୋଉ ଆସୁଚିରେ ବାପା, ଆମେ ଦେଖିପାରୁନୁ । ସେ ଦେବତା ହେଇଗଲାଣି । ଦେବତାମାନେ ପବନରେ ଶୂନ୍ୟରେ ଆସନ୍ତି । ଆମକୁ ଦେଖାଯା'ନ୍ତି ନାହିଁ, ଅଥଚ ଆମ ଗୁରିପାଖରେ ଥା'ନ୍ତି । ଆମେ ଭଲ ମନରେ ଯାହାଦେଉ, ତାକୁ ସେମାନେ ଗ୍ରହଣ କରନ୍ତି । ସେମାନେ ବାସ୍ନା-ଭୋଗୀ । ତତେ ଭୋଗ ଖାଇବାକୁ ଭଲ ଲାଗେନା ? ଭୋଗ କେଡ଼େ ସୁନ୍ଦର ବାସେ । ଆମେ ତାଙ୍କୁ ଯେମିତି ଡାକୁ, ସେବାକରୁ, ସେମାନେ ସେମିତି ଆମ

କଥା ଶୁଣନ୍ତି । ବିପଦଆପଦରେ ଆମର ସାହା ହୁଅନ୍ତି । ବୋଉର ଦେହଟାକୁ ସିନା ପୋଡ଼ିଦେଇ ଆସିଲ, ସେ ଯିବ କୁଆଡ଼େ ? ତମକୁ ଛାଡ଼ି ସେ କ'ଣ କୋଉଠି ରହିପାରିବ ? ବଡ଼ ହ', ସବୁକଥା ଜାଣିବୁ ।

ମା' କଥା ଶୁଣୁ ଶୁଣୁ ମୁଁ ଶୋଇପଡ଼ିଲି । ଟୁଲୁ ନ ଖାଇ ଶୋଇ-ପଡ଼ିଥିଲା ।

ସକାଳୁ ସକାଳୁ ଟୁଲୁ ଧଡ଼ପଡ଼ ହୋଇ ବିଛଣାରୁ ଉଠି କହିଲା—ମା'ଲୋ କାଲି ରାତିରେନା ବୋଉ ଛପିଛପିକା, ଛପିଛପିକା ଆସିଲା । ମୋ ପାଖରେ ବସି, ମତେ ଗେଲ କଲା । ମୁଁ ଯେମିତି ତା ଦୁଦ ଖାଇଦେଇଥିନା, ଚଟ୍‌କିନା ଉଠି ପଳେଇଗଲା । ଖରି ଚଗଲିବୋଉଟା କୋଉଠି ଲୁଚିଗଲା ପରା ।

ମୁଁ ଟୁଲୁକୁ ନାଲି ଆଖି ଦେଖେଇ କହିଲି—ମିଛୁଆ ।

ସେ କହିଲା—ମୁଁ କାହିଁକି ମିଛୁଆ ହେବି । ତୁ ମିଛୁଆ । ମା'ଲୋ, କାଲି ରାତିରେ ବୋଉ ଆସି ନ ଥିଲା କି ? ତୁ ଦେଖିନୁ ?

ମା' କହିଲା—ହଁ ମ ତତେ ଦୁଦ ଦଉଥିଲା ପରା । ନନାଟା ମିଛୁଆ । ଖାଲି ଶୋଇବ । କିଛି ଦେଖିପାରିବନି । ଗଧଟା !

ମା' କଥା ଶୁଣି ରାଗିଯାଇ କହିଲି—ମୁଁ କାହିଁକି ମିଛୁଆ ହେବି ? ତୁ ମିଛୁଆ । ତୋ ବୋଉ ମିଛୁଆ । ତୋ ବାପା ମିଛୁଆ, ତମେ ବଡ଼ମାନେ ସମସ୍ତେ ମିଛୁଆ ।

ହେଲେ ଟୁଲୁକୁ ମିଛୁଆ ବୋଲି କହିପାରିଲିନି ।

## ।। ଚଉଦ ।।

ଖରାଦିନ ଛୁଟିରେ କିଏ କୁଆଡ଼େ ଗଲେ, ଆଉ ଆମେ ମା' ସାଙ୍ଗରେ ଆସିଲୁ ଅନୁଗୋଳ । ମୋର ଯେମିତି ଆଉ କୁଆଡ଼େ ଯିବାର ନାହିଁ ? କେମିତିଆ ବାପା କେଜାଣି ? ସେ ବି ସେମିତି । ଆମକୁ ସାଙ୍ଗରେ ନେଇ କୁଆଡ଼େ ଟିକେ ବୁଲିଯାଆନ୍ତେନି । ନା, ହବନି । ଖାଲି ଖମାର ଅନୁଗୋଳ, ଅନୁଗୋଳ ଖମାର ହଉଥିବେ । ମଝିରେ ମଝିରେ ଗୃହ ଯାଉଥିବେ କଟକ । ଫୁଲାଏ ବହି କିଣିଆଣି ଘରେ 'ଗଦା କରିଦେବେ । କଟକ ନ ଗଲେ ଯେମିତି

ତାଙ୍କ ଘାତ ହଜମ ହୁଏନା । ଆଉ ବେଳେବେଳେ ଟେପ୍, କ୍ୟାମେରା ବ୍ୟାଗ୍‌ରେ ପୂରେଇ କୁଆଡ଼େ ଗୁଲିଯିବେ । ଘରେ ଆସି ସେଗୁଡ଼ାକ ବଜେଇ ଶୁଣିବେ, ଲେଖିପକେଇବେ । କ'ଣ ପା'ନ୍ତି ସେଥିରୁ କେଜାଣି ?

ମା'କୁ ପଗ୍ଚରିଲି—ମା'ଲୋ, ବାପାଙ୍କର କ'ଣ ଗାଁକୁ ଯିବାକୁ ମନ ହଉନି ? ନିଜ ଜନ୍ମଭୂମିକୁ ଗ୍ଡ଼ି କେମିତି ରହିପାରୁଛନ୍ତି ?

ମା' କହିଲି—ବାପା ନ ଗଲେ ତୋର କ'ଣ ହେଲା ?

"ସେ ଗଲେ ସିନା ମୁଁ ଯିବି । ମତେ ବି ଗ୍ଡ଼ୁନାହାନ୍ତିନା ? ମୋ ମନନା କ'ଣ ହେଇଯାଉଚି । ଗାଁ ଆଡ଼େ ଟିକିଏ ବୁଲିଆସିଲେ ଭଲ ଲାଗେ । ଜେଜାମା, ସାନବାପା, ମଝିଆବାପା, ପିଇସାଙ୍କ ସାଙ୍ଗରେ ମତେ କେଇଦିନ ପାଇଁ ଘରକୁ ପଠେଇଦେଲେ ହ'ନ୍ତାନି ।

—ହଁ, ତୁ ଯୋଉ ସୁଧାର ପିଲାଟାନା । ଗାଁକୁ ଯିବାପାଇଁ ଏତେ ପେଣ୍ଟକାଣି କାଇଁକି, ସେ କଥା କ'ଣ ମୁଁ ଜାଣିନି ନା କ'ଣ ?

—ତୁଟା କଣ୍ଟି ଜାଣିନୁ । କ'ଣ ଜାଣିଚୁ କହିଲୁ ?

—ନା, ମୁଁ କେମିତି ଜାଣିଲି ? ମୁଁ ତ ତୋଠୁ ଜନମ ହେଇଚିନା ? ଗାଁକୁ ଯିବାରେ ଇଚ୍ଛା ନା ନଡ଼ିଆ, ତାଳ, ଆମ୍ବ, ପଣସ, ନୁଣୁନୁଣିଆ, ଜାମୁ, ବରଗଛରେ ନାଟ ନଚେଇବାରେ ଇଚ୍ଛା । ଟୁଟୁନା, ମାମିନୁ, ଟୁଲିଆ, ଗୁଲିଆ, ପିଣ୍ଟିନ, ମିଣ୍ଟିନ ସମସ୍ତେ ଅଛନ୍ତି । ସକାଳୁ ଶୋଇବା ପର୍ଯ୍ୟନ୍ତ ଗୁଲିବ ଡିଆଁଡେଇଁ, ତାସ୍, ଲୁଡ଼ୁ, କ୍ରିକେଟ୍ ଖେଳ । ମାଗୁଫାଦର ଗଡ଼ିଆ, ନାକେଇ ଗଡ଼ିଆର ଗୋଳିଆପାଣିରେ ବୁଡ଼ା । ସାନବାପା ସାଇକେଲରେ ଗରଦପୁରବୋଉ, ଜେଜାମା, ମିଠାଅଜା, ଦଶମାଣକୂଳ ଅଜାଘର, ହାଟ, ବଜାରବୁଲା । ଯାତରା, ବା'ଘର ଭୋଜିଭାତ ବି ଅଛି । କେହି କଣ୍ଟି କହିବେନି କି କହିଲେ—ଆପଣ କାହା କଥାକୁ ଖାତିର କରିବେନି । ଭଚ୍ଚୋ ପାଉଆର ଦେଖେଇବେ ।

—ଉଁ, ଭାରି କଥା କହିଲାବାଲା । ଏଠି କ'ଣ ଗଛ ନାଇଁ ? ଏଠି କ'ଣ ସାଙ୍ଗ ନାହାନ୍ତିନା ଖେଳୁନୁ ? ମିଠା ଖାଉନୁନା ବଜାର ଯାଉନୁ ? ତୁ ହୁଣ୍ଡିଟା କଣ୍ଟି ଜାଣିନୁ, ଖାଲି ବଡ଼ ବଡ଼ କଥା କଉଚୁ । ବୁଦ୍ଧିଶୁଦ୍ଧି ଏତେ ଟିକିଏ ନାଇଁ ।

—ତୁ ବାପାକୁ ଯାଇ କଉନୁ ? ମୁଁ କ'ଣ ମନାକରୁଚି କି ?

—ନା, ତୁ କାହିଁକି ମନାକରିବୁ ? ଆଗରୁ କି ପଠେଇଦେଉଚୁ ?

—ତମ ପରି ବଶୁଦ୍ଧ ବାଳୁଙ୍ଗାମାନଙ୍କୁ କିଏ କୁଆଡ଼େ ପଠେଇ ଶାନ୍ତିରେ ରହିଲଣି ନା ରହିବ ? ଟିକିଏ ଆଖି ଏପଟ ସେପଟ ହେଇଗଲେ ତମେ ଘର ଲଙ୍କାକାଣ୍ଡ କରିଦେବ ।

—ହଁ ଘର କହିଲବାଲା । ଲଟୁ ଝୁଲୁ ଖାଲି ବାଳୁଙ୍ଗା, ଖେଚଡ଼ାମି କରୁଛନ୍ତି । ଇଏ ପିଲାବେଳେ ଯେମିତି କିଛି କରୁ ନ ଥିଲେ । ମାଛିକୁ ମ' କଉ ନ ଥିଲେ । ସୁନାପିଲା ଥିଲେ ।

ତୁ ତ ନିଜେ କଉଥିଲୁନା, ପିଲାବେଳେ ତୁ କେତେ ଚଗଲା ଥିଲୁ । ବାପାବୋଉ ଖରାବେଳେ ଶୋଇପଡ଼ିବାମାତ୍ରେ ଚୁପ୍‌କିନା ଉଠି ଚାଲି-ଯାଉଥିଲୁ । ଚୁହିଁକରି ଆଖି ବୁଜି ଦେଉଥିଲୁ । ଘର ପଛଆଡ଼େ ଯାଇ ସାଙ୍ଗ-ମାନଙ୍କ ସାଙ୍ଗରେ କଣ୍ଢେଇ ବା'ଘର କରୁଥିଲୁ । କଷି ବରକୋଳି, ତେନ୍ତୁଳି, ଲେମ୍ବୁ, କମଳା, କରମଙ୍ଗା, ଆମ୍ବଡ଼ା, ଆମ୍ବ ଯାହା ପାଇଲେ ସେଥିରେ ନୁଣଲଙ୍କା ଗୋଳେଇ ଦବେଇ ଦେଉଥିଲୁ । କିଛି ନ ମିଳିଲେ ତେନ୍ତୁଳିପତ୍ରରେ ନୁଣଲଙ୍କା ଚକଟି ଚାଟି ପକାଉଥିଲୁ । ଗଡ଼ିଆରେ ପଶି ମାଛ ଧରୁଥିଲୁ, ଆଉ ଧରା ପଡ଼ିଗଲେ ବାପାଙ୍କଠୁ ଛେଚା ଖାଉଥିଲୁ । ସନ୍ଧ୍ୟାବେଳେ ଲଣ୍ଠନ ପାଖରେ ବସି ଡୋଳାଉଥିଲୁ । ପିଠିରେ ବସୁଥିଲା ଦୁମ୍ ଦୁମ୍ ଗୋପାଳ । ଏମିତି ଥାକୁଲା ଥିଲୁ ଯେ, ଖେଳରେ କାହାକୁ ପାରୁ ନ ଥିଲୁ । ସମସ୍ତଙ୍କ ପାଖରୁ ହାରିଯାଉଥିଲୁ ଆଉ କଇଁ କଇଁ ହେଇ ସକୋଉଥିଲୁ । ବାପା ବୋଉ ଯୋଉ କାମ କହିଲେ କିଛି କରୁ ନ ଥିଲୁ । ବାଁକାଲିଆ ମାରି ପଳେଇଯାଉଥିଲୁ ।

ତୁ ସପ୍ତମ କି ଅଷ୍ଟମରେ ପଢ଼ିଲବେଳେ ବୋଉ ତତେ ଭାତହାଣ୍ଡିରେ ପାଣି ଦବାକୁ କହିଲା ଯେ, ତୁ ଫୁମ୍ପୁଡ଼ି କାଢ଼ିଲୁ । ସେ ଯେମିତି ତତେ କହିଚ—ଏଡ଼େ ବଡ଼ ଝିଅଟା ହେଲଣି, କୋଉ କାମରେ ମୂଲ୍ୟନ ବୋଲି, ତୁ ସାଙ୍ଗେ ସାଙ୍ଗେ ସେଇଠି, ହାଣ୍ଡିଶାଳ ଭିତରେ ବସି ମୂଡିଦେଲୁନା ? ବୋଉ ପୁଣି ନୂଆ ହାଣ୍ଡି କଲା । ଇଏ ନିଜେ ତ କିଛି ବୋଲି କିଛି କରୁ ନ ଥିଲା, ଆଉ ଆମକୁ ଖାଲି ସବୁବେଳେ କହିବ—ଅମକଟା କର, ତମକଟା କର, ପଡ଼, ପାଠିକରନା । ଟିକିଏ କୁଆଡ଼େ ଗଲେ ଏଡ଼େ ବଡ଼ ପାଠିକରି ଖାଲି ଚଲେଉଥିବ—ଲଟୁରେ, ଝୁଲୁରେ । ରହିଥା, ଆମକୁ ହଇରାଣ କରୁଚ, ଦେଖିବ ଯେ ?

ଓଁ, ମେଞ୍ଚଡ଼ ବକଟେ ଘର କଥା କହି ଶିଖିଚ । ମୁଁ କ'ଣ କରୁଥିଲି ସବୁ ଯେମିତି ଦୁଇ ଆଖିରେ ଦେଖିଚ ? ମୋ ଜନ୍ମକଲା ବାପ ।

ଖାଲି କ'ଣ ସେତିକ, ଆଉରି କେତେ କଥା ଜାଣିଚ । ତୁ ସପ୍ତ ଅଷ୍ଟମ ନବମ ଶ୍ରେଣୀରେ ପଢ଼ିବା ପର୍ଯ୍ୟନ୍ତ ହାତରେ ଖାଉ ନ ଥିଲୁ । ବୋଉ ତତେ ଖୁଆଇଦଉଥିଲା । ହଗିକରି ଠିଆ ହେଉଥିଲୁ । ସେ ତୋ ଗାଣ୍ଡି ଧୋଇଦଉଥିଲା ।

—ବାଳୁଙ୍ଗା ଟୋକା ଦେଖିବୁ ଏଇକ୍ଷିଣା । ପିଠି କଅଁଳ ଗଲାଣିନା । ଖୋକାରୁ, ବାପା ଆସନ୍ତୁ ରହ ।

ମା' ଯେମିତି ମୋ ଉପରେ ରାଗିଛି, ତାକୁ ପୁଣି କହିଲି—ଖାଲି କ'ଣ ତୋ କଥା, ବାପାଙ୍କ ପିଲାବେଳ କଥା ବି ଜାଣିଚ । ବୋଉ କଉଥିଲା । ବାପା ଏତେ ଦୁଷ୍ଟ ନ ଥିଲେ । ମୋ ପରି ଚଗଲାମି କରୁ ନ ଥିଲେ । ବୋଉ ଯାହା କହୁଥିଲା ଅକ୍ଷରେ ଅକ୍ଷରେ ମାନୁଥିଲେ । ଏକଦମ୍ ସୁନାପିଲା ।

ବୋଉ କହିଲା—ପାଣିରେ ପହଁରିବୁନ । ବୁଡ଼ିଯିବୁ । ବାପା ପହଁରି ଶିଖି ନାହାନ୍ତି ।

ବୋଉ କହିଲା—ସାଇକେଲ ଚଢ଼ିବୁନ । ପଡ଼ିଯିବୁ । ବାପା ସାଇକେଲ ଶିଖି ନାହାନ୍ତି । ମୁଁ ଶିଖିଗଲିଣି । ଆମର ଗାଡ଼ି ନାହିଁ । ଅଗାଡ଼ି ।

ବୋଉ କହିଲା—ଗଛରେ ଚଢ଼ିବୁନ । ଗୋଡ଼ହାତ ଭାଙ୍ଗିଯିବ । ସେ ଗଛଚଢ଼ା ଶିଖି ନାହାନ୍ତି । ଗଛ ତଳେ ଠିଆ ହୋଇ ଯିଏ ଯାହା ଦେଲା ଖାଆନ୍ତି । ଅଇଁଠାଖିଆ ।

ବୋଉ କହିଲା—ପଡ଼ିଆରେ ବଡ଼ ବଡ଼ ପିଲାଙ୍କ ସାଙ୍ଗରେ ଖେଳା-ଖେଳି କରିବୁନ । ସେ କୋଉ ଖେଳ ଶିଖି ନାହାନ୍ତି । ଖାଲି ଖେଳ ଦେଖନ୍ତି । ଦିନେ ବଳପୁନନା ମାଳମା' ବଡ଼ବୋଉଘର ନେଉଆଗଛରେ ଚଢ଼ି ନେଉଆ ତୋଳୁଥିଲେ । ବାପା ଠିଆ ହୋଇଥିଲେ ତଳେ । ବୋଉକୁ କିଏ କହିଦେଲା ସେ ନେଉଆ ଚୋରି କରିଛନ୍ତି ବୋଲି । ବୋଉ ରାଗିକରି ତ ନିଆଁ । ବାପାଙ୍କୁ ବାଡ଼େଇ ବାଡ଼େଇ ଦରମରା କରିଦେଲା । ସେ ମାରୁଥାଏ—ଇଏ ତାକୁ କୁଣ୍ଢେଇ ଧରିଥାନ୍ତି । ବାପା ଏକଦମ୍ ବୋକା ଥିଲେ, ନାଇଁଲେ ମା' ? ମାଡ଼ ଉପୁରେ କିଏ ସିନା ବାଁକାଳିଆ ମାରି ଦୋଉଡ଼ି ପଳେଇଯାଏ । ଇଏ ଓଲଟି କୁଣ୍ଢେଇ ଧରନ୍ତି । ଧରନ୍ତି ଯେମିତି, ଉଦ୍ଧବ ଖାଆନ୍ତି ସେମିତି । ତୋ ପରିକା

ସେ ସୁଉଦୁ ହୁଣ୍ଡା ଥିଲେ, ନାଇଁଲୋ ମା ? ସେଇଦିନୁ ସେ ଆମ ବାଡ଼ିରୁ ବି ପିଜୁଳି କି କାକୁଡ଼ି ଚୁଣ୍ଡେଇ ଖାଆନ୍ତିନି । କହିକରି ଖାଆନ୍ତି ।

ବାପା ସିନା ଆଉ କୋଉ ପିଲି ସାଙ୍ଗରେ ଲଗନ୍ତିନି । ହେଲେ, ମହିିଆବାପା, ସାନବାପାଙ୍କୁ ଭରି ହଇରାଣ କରନ୍ତି । ସେମାନଙ୍କୁ ସବୁବେଳେ କନ୍ଦାନ୍ତି । ବୋଉ ପାଟିକଲେ କହନ୍ତି—ଆଉ କୋଉ ପିଲିଙ୍କ ସାଙ୍ଗରେ ଖେଳିଲେ ତ କହିବୁ । ମୋ ଭାଇଙ୍କ ସାଙ୍ଗରେ ଖେଳିଲି, ତୋର କ'ଣ ହେଲି ?

ମୁଁ ଝୁଲୁକୁ କହେଇଲେ ତମେ କାଇଁକି ମତେ ମାରିବ ? ତମ କାମଗୁଡ଼ା ଭଲ, ଆଉ ମୋ କାମ ଖରାପ ।

ମା'ଲୋ, ତୁ ଜାଣିନୁ୍ନା; ବାପା ସତରେ ଭରି ହୁଣ୍ଡା ଥିଲେ । ଆମ ଘରେ ଯୋଉ ମା' ନାହାନ୍ତି, ସେଇ ବୁଢ଼ୀ ଠାକୁରାଣୀ—ବୋଉ ମା' ପାଖରେ କାନନାକ ମୋଡ଼ି ହୁଏ, ଯାହାକୁ କେତେ ଭଲ ଜିନିଷ ଖାଇବାକୁ ଦିଏ, ଦଶହରାବେଳକୁ ତା ପାଖରେ ଯୋଉ ପୂଜା ହୁଏନା, ବାପା କାଳେ ପିଲି ଥିଲାବେଳେ ମଜା କରୁଥିଲେ । ବୁଢ଼ୀ ପାଖରେ ତ ପିଠା, ଭାତ, ଫଳମୂଳ କେତେ କଥା ଖାଲି ଭୋଗ ହଉଥାଏ । ଥରେ ବାପା ବୋଉକୁ କହିଲେ—ବୋଉଲୋ, ତୁ ବୁଢ଼ୀକୁ ଏତେ ଜିନିଷ ଖାଇବାକୁ ଦଉଚୁ, ତା ପେଟ ଖରାପ ହବନି ? ସେ ହସିଦେଲେ—ଆମେ କ'ଣ କରିବା ? ଗୋପାଳ ସାର୍‌ଙ୍କ ଘରୁ ଔଷଧ ଆଣିବୁ ଚାଲ୍ ।

କହିଲେନି, କାନ୍ଦକରି ଗଡ଼ିଲେ । ଏକଜିଦିଆ । ଯାହା ବୁଝିଥିବେ ସେୟା । ବାପା ତାଙ୍କୁ ସାଙ୍ଗରେ ନେଇ ଗୋପାଳ ସାର୍‌ଙ୍କ ଘରକୁ ଗଲେ । ତାଙ୍କଠୁ ହୋମିଓପାଥି ଔଷଧ ଆଣିଲେ । ବୁଢ଼ୀ ପାଖରେ ଭୋଗ କଲେ । ତା'ପରେ ଯାଇ ସେ ଖାଇଲେ ।

ଏ ଯୋଉ ଜଗାକାଳିଆଙ୍କ ରଥଯାତ୍ରା ହୁଏନା, ବାପା କାଳେ ଗାଁରେ ସେମିତି କରୁଥିଲେ । ରଥ ଭାଗବତଘରୁ ଯାଉଥିଲା ରଘୁ ଜେଜାଙ୍କ ଘରକୁ । ଲୁନି ରଥଟାଏ । ରଥ ଆଗେ ଆଗେ ବାପା ବାଡ଼ିଧରି ଚାଲୁଥିଲେ । ଖାଲି କ'ଣ ସେତିକି କଲେ ମା' । ଚଅଁର ଧରିକରି ଗାଁରେ ପାଲି କରୁଥିଲେ । ସେ ଥିଲେ ଗାଆଣ । ବଳଯୁନା, ହରିଆନା, ଶୁକୁଟାନା ଥିଲେ ତାଙ୍କର ପାଳିଆ । ବଢ଼ିଆ ଗୀତ ବୋଲୁଥିଲେ । କଣ୍ଠ ତାଙ୍କର ଭରି ସରୁ ଥିଲା । ପାଖ

ଗାଁର ମାଇପେ ପା ଆସି ତାଙ୍କ ଗୀତ ଶୁଣୁଥିଲେ । ପିଲାବେଳେ ଏକଦମ୍ ମଜା କରୁଥିଲେ ।

ମା' କହିଲା—ତୁ ସେମିତି କରୁନୁ । କିଏ ମନାକରୁଚି କି ? ତା ନ କରି ଏତେ ଦୁଷ୍ଟାମି କରୁଚୁ କ'ଣପାଇଁ ? ଏମିତି ହେଲେ ମାଡ଼ ଖାଇବୁନି କ'ଣ ତତେ ମୂଜା କରିବେ ?

ମତେ ଗାଁକୁ ନେଉନୁ । ସେମିତି କରିବିନି କି । ଏସବୁ ଜାଗାରେ ସେମିତି ହେଲେ ଲାଜ ଲାଗିବନି ? ଲୋକ କ'ଣ କହିବେ ?

ନା, ତୁ ଯାହା କରୁଚୁ—ସମସ୍ତେ ତତେ ସୁନାପିଲା ବୋଲି କହୁଛନ୍ତି ।

ମୁଁ ଆଉ କ'ଣ ଖରାପ କାମ କରୁଚି କି ? ବାପାଙ୍କ ମନକୁ ଯାଆ ଆସୁଥିଲା କରୁଥିଲେ, ମୋ ମନକୁ ଯାହା ଆସୁଚି ମୁଁ କରୁଛି । ମୁଁ କ'ଣ ଗୀତ ବୋଲୁନି କି ? ବ୍ରତ କରୁନି କି ? ଠାକୁରପୂଜା କରୁନି କି ? ଝୁଲୁକୁ ଚଢ଼ୋଉନି କି ? ବାପା ଆଉ କୋଉ ଅଧିକ କାମ କରୁଥିଲେ ଯେ ? ତୁଉଟା ମିଛରେ ଖାଲି ମୋ ଉପରେ ଚିଡ଼ଚିଡ଼ ହଉଚୁ । ବୋଉ ତ ସବୁବେଳେ କହେ—ତମେମାନେ ମତେ ମିଛରେ ମାରୁଚ । ମୁଁ ବାପାଙ୍କଠାରୁ ବେଶୀ ବୁଦ୍ଧିଆ । ସେ ତ ତମକୁ ସବୁ ମନା କରିଥିଲା ମତେ ମାରିବାପାଇଁ । ସେ ମରିଗଲା ବୋଲି ମତେ ଏତେ ମାରୁଚ । ତମ ବୋଉକଥା ମାନୁନ । ପାଇବ ଯେ ।

ତୁ କାହିଁକି ଆମ କଥା ମାନୁନୁ । କଥା ନ ମାନିଲେ ମାଡ଼ ଖା'ନ୍ତି ।

—ତମେମାନେ କୋଉ ବୋଉ କଥା ମାନୁଚ କି ? ବଡ଼ ପିଲାମାନେ କଥା ନ ମାନିଲେ ତାଙ୍କର କିଛି ହବନି । ତାଙ୍କୁ କେହି କିଛି କହିବେନି । ସେମାନେ ମାଡ଼ ଖାଇବେନି । ସବୁ ଖାଲି ଆମ ସାନ ପିଲାମାନଙ୍କ ପାଇଁ ।

—ଆମେ କ'ଣ ବୋଉ କଥା ମାନୁନୁ କି ?

—ବୋଉ ତ ତତେ ବାପାଙ୍କୁ, ସମସ୍ତଙ୍କୁ ଗାଁକୁ ଯିବାପାଇଁ କହିଥିଲା । ଆଉ କେତେବେଳେ ନ ହେଲେ ନାଇଁ ପଛେ, ବୁଢ଼ୀର ପୂଜାକୁ ଯିବାପାଇଁ ବାଧ କରିଥିଲା । ବାପା ଯାଇଥିଲେ କି ? କହ । ବୋଉକଥା ମାନିଚନ୍ତି କି ? ତାଙ୍କୁ କିଏ କହିବ ? ବଡ଼ ପିଲା । କେହି କିଛି କହିପାରିବେନି । କୋଉ ବୋଉ ଅଛି କି ?

ମା' କହିଲା—ବୋଉ ଥିଲାବେଳେ ଯାଉ ନ ଥିଲେ କି ?

ଯାଉ ନ ଥିଲେ ବୋଲି ମୁଁ କହିଲି କି ? ବୋଉ ତ କହୁଥିଲି—ବାପା କାଳେ ଭରି ଘରରକ୍କୁଣା । କେନ୍ଦ୍ରାପଡ଼ା, କଟକରେ ପଢ଼ୁଥିଲାବେଳେ ଯେତେବେଳେ ମନ ହଉଥିଲା, ଘରକୁ ପଳେଇଯାଉଥିଲେ । ଖରାବର୍ଷା କି ମାନୁ ନ ଥିଲେ । ବଡନେ ବଡନେ ଅଧରାତିରେ ଯାଇ ଘରେ ପହଞ୍ଚୁଥିଲେ । ସେ ତ ପହଁରି ଜାଣନ୍ତିନି—ନଈକି ଡର । ରାତିରେ ସାପ, ଜନ୍ତୁଜାନ୍ତା । ଭୂତ, ଡାଆଣୀ ବି ଥା'ନ୍ତି । ବୋଉ କଥା ମନେପଡ଼ିଗଲେ—ସେ ଆଉ କାହାକୁ ମାନୁ ନ ଥିଲେ । ସାପ, ଭୂତପ୍ରେତ ତାଙ୍କୁ ଡରିକି ପଳେଇ ଯାଉଥିଲେ । ହେଲେ ବୋଉ କିନ୍ତୁ ତାଙ୍କୁ ଏତେ ସାହସ ଦେଖେଇବାପାଇଁ ମନା କରୁଥିଲା । ସେ କୋଉ ମାନୁଥିଲେ କି ?

ମା'ଲେ ଆମର ତ ଡରଫର କିଛି ନାହିଁ । ତମେସବୁ କାଇଁକି ଆମ ପାଇଁ ଏତେ ଡର କଲେ । ମା'ଗୁଡ଼ାକ ଡରେଇ । ଆମର କିଛି ନ ହଉ ବୋଲି ସବୁବେଳେ ଖାଲି ଠାକୁର ଠାକୁରାଣୀଙ୍କି ଡକା ପକାଉଥାଅ । ସେମାନେ ତାଙ୍କ କଥା ଶୁଣିବାକୁ ଯେମିତି ଜଗିରହିଛନ୍ତି । ସେମାନଙ୍କର ଯେମିତି ଆଉକିଛି କାମଦାମ ନାହିଁ । ତମେସବୁ ଭରି ଡରୁଆ । ଝିଅଗୁଡ଼ାକ ଆଉ କ'ଣ ହ'ନ୍ତେକି ? ଆମ ସ୍କୁଲ ଝିଅଗୁଡ଼ାକ ସେମିତି ଯେ !

ମା' କହିଲା—ହଉ ବାପା ହେଲା, ଆମେସବୁ ଡରେଇ, ତମେସବୁ ଭଲ, ବୀର । ଆଉ ବେଶୀ ବଡ଼ ବଡ଼ କଥା କହନା । ବୀରପଣ ଦେଖାନା । ଯା' ତୋ କାମ କର ।

ମୁଁ ପୁଣି ତାକୁ କହିଲି—ତୁ ଆଗ କହ, ଗାଁକୁ ଯିବା କି ନାଇଁ ?

—ମୋ ବାପାଭଲଆ ମତେ କୋବୋଲେଉଚ ମେଅଡ଼ ଟୋକା-ଖଣ୍ଡକ । ଗାଁରେ ଯେମିତି ସବୁ କାମ ମୋ ଲାଗି ଅଟକି ରହିଚ । ଇଏ ଗଲେ ଧାନବୁଣା ହବ, ସାରୁ, ବାଇଗଣ, ଆଳୁ ଲାଗିବ, ଗଡ଼ଆରୁ ମାଟି ତୋଳିବ, ବାଡ଼ ବୁଜାହବ, ଗଛରୁ ଡାଳ ହଣାହବ । ଯା ପଡ଼ ଯା । ସମସ୍ତେ ନଷ୍ଟ ନ କଲେ, ମୋ ଭାତ ହଜମ ହବନି ।

ମୁଁ କାଇଁକି ଘରେ ଏତେ କାମ କରିବ କି ? ମୁଁ ତ ପିଲାଟେ । ବାପା କ'ଣ କରିବେ କି ? ଖାଲି ଗୁଁ' ପିଇବେ । ଗାଈ ତ ଦୁଧ ଦଉଥିବ, ଗୁଁ' ପିଇବାକୁ ମଜା । କିଏ ଆସିଲେ, ତାଙ୍କ ସାଙ୍ଗରେ ବସି ଗପିବେ । କେମିତି ଏତେ ଗପନ୍ତି କେଜାଣି ? ପାଟି ଫୋଲେଇ ହେଇପଡ଼େନା ?

ଖରାବେଳେ, ରାତିରେ ବଡ଼ବାପା, ହରିଆନା, ବଳୟୂନା ମାଗୁଣାଦର ସାଙ୍ଗରେ ବସି ତାସ୍ ଖେଳିବେ । ଗାଁରେ ଯାଇ ଡ୍ରାମା କରିବେ ।

ମା’ କହିଲି—ବାପା ଆଉ କିଛି କରନ୍ତିନାନା ?

—ମୁଁ କ’ଣ ମନାକଲିକି ? ମଝିଆବାପା, ସାନବାପାଙ୍କ ସାଙ୍ଗରେ କାମ କରନ୍ତି । ହଳ ସାଙ୍ଗରେ ଯା’ନ୍ତି । ବିହନ ବୁଣନ୍ତି । ସାରୁ, ଆଳୁ ଲଗାନ୍ତି । ଗଡ଼ିଆ କାମ ବେଳେ ସାନବାପାଙ୍କ ମୁଣ୍ଡକୁ ମାଟି ଦିଅନ୍ତି । କାମ କଲାବେଳେ କିଏ ଆସିଲେ—ଖସିକରି ପଳେଇଆସି ଗପନ୍ତି । ଖାଲି ଗପ ।

ମା’ଲେ, ବାପା ତ ଗାଁରେ ଜମାରୁ ପଢ଼ନ୍ତିନି ? ସକାଳେ, ଉପରଓଳି ବାଲିବାରି, ଖରାବେଳେ ତାସ୍ , ରାତିରେ ବୋଉ, ଗେଷ୍ଟ୍ମାନଙ୍କ ସାଙ୍ଗରେ ଯେତେବେଳେ ନାଇଁ ସେତେବେଳେ କଥା ହଉଥା’ନ୍ତି, ଆଉ ପାଠ ପଢ଼ିବେ କେତେବେଳେ ? ଗାଁରେ ରହିଲେ ଦୂରିପୂରି ମୂର୍ଖ ହେଇଯିବେ । ନନେ ତ ପାଠର ନାଁ ଧରିବେନି, ମତେ ଖାଲି କହିବେ—ପଢ଼ ପଢ଼ । ତାଙ୍କର ପଢ଼ିବାକୁ ଇଚ୍ଛା ହୁଏନା, ମୁଁ କେମିତି ପଢ଼ିବି ? ବଡ଼ ଲୋକମାନଙ୍କର ଏତେ ଟିକିଏ ବି ବୁଦ୍ଧି ନାହିଁ । ଯାହା ବୁଝିଥିବେ ସେୟା । ନିଜକୁ କ’ଣ ବୋଲି ଭାବନ୍ତି କେଜାଣି ? ଗାଁକୁ ଯିବା ନ ।

ମା’ କହିଲି—ଦେଖ୍ , ବେଶୀ ବକ୍ ବକ୍ ହଅନା । ମୋ ମୁଣ୍ଡ ବିନ୍ଧିଲାଣି । ଯାଉନୁ ବାପାଙ୍କୁ କହିବୁ । ମୋ ପାଖରେ କାହିଁକି ଫଟେଇହଉଚୁ ?

ମା’ଲେ, ଗାଁର କୋଇଲିଗୁଡ଼ାକନା ଭାରି ଖେଚଡ଼, ଦୁଷ୍ଟ, କଳିହୁଡ଼ୀ । ସେମାନେ ଗଛରେ ନୁଚ ନୁଚ ବୋବୋଉଥିଲାବେଳେ, ମୁଁ ଯେମିତି ତାଙ୍କରି ପରି ଶବ୍ଦ କରିବି, କହିବି ‘କୁଉ’, ସେମାନେ ଆଉରି ଜୋର୍‌ରେ କହିବେ— କୁଉ କୁଉ, କୁଉ । ଆମେ ପୁଣି କହିବୁ କୁଉ, ସେମାନେ ରାଗିଯାଇ ଖାଲି କୁଉ କୁଉ କୁଉ କୁଉ ହେବେ ଯେ, ଫଟେଇବେ । ତୁ ଯେମିତି ଲଟ୍ଟୁ ଲଟ୍ଟୁ ହଉ, ଠିକ୍ ସେମିତି ।

ମୋ କଥା ଶୁଣି ମା’ ଗାରଡ଼େଇ ଚାହିଁଲା । କିଛି ନ ଜାଣିଲାପରି ପୁଣି କହିଲା—ତୁ ଦେଖିଚୁନା ମା’ କଜଳପାତିମାନେ ମାଙ୍କଡ଼ଗୁଡ଼ାଙ୍କୁ କେତେ ହଇରାଣ କରନ୍ତି । ମାଙ୍କଡ଼ ଯୋଉଠି ବସିଥିବେ, କଜଳପାତି ତା ମୁଣ୍ଡ ଉପରଦେଇ ସାଏଁ ସାଏଁ ଉଡ଼ି ଯାଉଥିବ । ତା ମୁଣ୍ଡକୁ ଖୁମ୍ପି ଦଉଥିବ ।

ସେଗୁଡ଼ାକ ଚରିଗଲା । କୁଆଗୁଡ଼ାକଙ୍କୁ କ'ଣ କମ୍ ହଇରାଣ କରନ୍ତି । ମାଙ୍କଡ଼ ଜାକିଜୁକି ହୋଇ ବସିଯାଉଥିବେ । ଯେମିତି କିଛି ଜାଣିନି । ଭାରି ମଜା ।

ସେଇ ହନୁମାନମାଙ୍କଡ଼ଗୁଡ଼ାକ କେମିତି ହୁଁ ହାଁ କରି ଏ ଡାଳରୁ ସେ ଡାଳକୁ ଖପ୍‌ଖାପ୍ ଡେଉଁଥାନ୍ତି । ଡେଇଁଲାବେଳେ କୁନି କୁନି ଛୁଆ ମାଙ୍କଡ଼ଙ୍କୁ ଧରିଥାନ୍ତି । ସେଗୁଡ଼ାକ ଗଳିପଡ଼ନ୍ତିନି । ଏତେ ବାଟରୁ ଡିଅଁନ୍ତି । ତାଙ୍କୁ ଡର-ମାଡ଼େନା । ଗଛ ଡାଳଗୁଡ଼ାକ କେମିତି ଭାଙ୍ଗିଯାଏନା କେଜାଣି ? କେତେ ବଡ଼ ବଡ଼ । ଥାକୁଲ ଥାକୁଲ । ତାଙ୍କ ଦେହରେ କ'ଣ ଓଜନ ନାଇଁନା କ'ଣ ?

ତୋର ମନେଅଛିନା ମା'—ବାପା ଆରବର୍ଷ ଖରାଦିନେ ମତେ ପେଣ୍ଟୁଆ ବିଲ ଧାନ କିଆରିକୁ ନେଇଥିଲେ । ବାପା ବିହନ ମୁଣ୍ଡେଇଥିଲେ, ମୁଁ ଧରିଥିଲି ପାଣିଡାଲ । କିଆରିରେ ତାଙ୍କ ସାଙ୍ଗରେ ମୁଁ ବି ଧାନ ବୁଣିଲି । ମତେ ଭାରି ମଜା ଲାଗୁଥିଲା । ଖାଇବସିଲାବେଳେ ବୋଉ କ'ଣ କହୁଥିଲା ତୋର ମନେଅଛିନା ? କହୁ ନ ଥିଲା—ଆମ ବଡ଼ପୁଅ, ବଡ଼ କିଆରିରେ ଧାନ ବୁଣିକରି ଆସିଛି । କଷ୍ଟ ଲାଗୁଥିବ । ଶୀଘ୍ର ଖାଇବାକୁ ଦିଅ ।

ମା'ଲୋ, ଧାନକିଆରି ଦେଖିବାକୁ ଭଲ ଲାଗେନା । କେତେ ସବୁଜ । ଗାଁରେ ବହୁତ ଫୁଲ ଫୁଟେନା । ତୁ କେମିତି ବଉଳ ଆଉ ମଲ୍ଲୀଫୁଲ ମାଳକରି ମୁଣ୍ଡରେ ବାନ୍ଧୁ । ଏଠି କାଇଁକି ବାନ୍ଧୁନୁ କି ? ଲାଜ ଲାଗୁଛି କି ? ଗାଁରେ ଲାଗେନା ? ସେଠି ଫୁଲେଇହେବାକୁ ଭଲଲାଗେ । ବୋଉଟା କ'ଣ କମ୍ ଫୁଲେଇ କି ? ଗୋଟାଏ ହାର ଦବ ବୁଢ଼ୀକି । ଆଉ ଗୋଟାଏ ତା ଗେହ୍ଲେଇ ବୋହୂକୁ । ଇସ୍, ଆମ ବାରିରେ କେତେ ଫୁଲ । ତତେ କ'ଣ ଫୁଲ ଭଲଲାଗେନା ? ଗଡ଼ିଆରେ କେମିତି ନାଳ ପାଣି । କେତେ ମାଛ । ଗୋଡ଼ ବୁଲେଇଲେ ଖାଲି କାମୁ କାମୁ କରି କାମୁଡ଼ିପକାନ୍ତି । ମନେଅଛିନା, ତୁ ଦିନେ ପାଣିରେ ଚିତପହଁରା ମାରୁଥିଲୁ । ବଡ଼ବାପାଙ୍କୁ ଯେମିତି କୂଳରେ ଦେଖିଲୁ, ଧୂରା ଡରିଗଲୁ । ପାଣିରେ ବୁଡ଼ି ପକେଇଲୁ । ମୁଁ ଥିଲି ବୋଲି ତତେ ସେ କିଛି କହିଲେନି । ନଇଲେ ସେଇଦିନ ଦେଖିଥାନ୍ତେ ଯେ ?

ମା'ଲୋ, ପାଣିରେ ବୁଡ଼ିବାକୁ ଭାରି ଭଲ ଲାଗେ । ମୁଁ ବୁଡ଼େ ଦୋଧ । ଆମେ ସବୁ ସିନା ସାନ ପିଲା, ତମେ ବଡ଼ ପିଲାମାନେ ବୁଡ଼ିଲେ ପାଣି ମାରି

ହୋଇଯାଏନା ? ସେଇ ପାଣିରେ ପୁଣି ଠାକୁର ଗାଧୋଉଛନ୍ତି । ଛି, କେତେ ନାସେମା ।

ମା' ବିରକ୍ତ ହୋଇ କହିଲ—ଥାଉ ଥାଉ । ବେଶୀ ବକ୍ ବକ୍ ହ'ନା । ମୋର ଶୁଣିବାକୁ ବେଳ ନାହିଁ ।

ହଁ, ମୋ କଥା ତ ଗନ୍ଧୋଉଚ । ଶୁଣିବୁ କାହିଁକ ? ନ ଶୁଣୁ । ତୁ ମୋ କଥା ନ ଶୁଣିଲେ, ତୋ କଥା କେହି ଶୁଣିବେନ । ତୁ କ୍ଲାସ୍‌ରେ ଏଡ଼େ ପାଟିରେ ଭାଷଣ ମାଇଲ୍‌ବେଳେ, ତମ ପିଲ୍‌ମାନେ ଖାଲ ପାଟିକରି ଚଲେଇବେ । ପାଇବୁ ଯେ ପାନେ ।

ହଉ, ମୁଁ ପାଇଲେ ପାଇବ । ତୋର କ'ଣ ହେଲ ? ଚୁପ୍ ରହ । ତୋ କାମ କର ।

ମୁଁ କ'ଣ ମିଛକଥା କଉଚ କ ? ସତକଥା ତ । ତୁ ନ ଶୁଉଣୁ । ମୋର ମୁଁ କାନ୍ଥବାଡ଼କୁ, ଟୁଲୁକୁ କହିବ ।

ଏଥର ଟୁଲୁ'କୁ ପାଖରେ ବସେଇ କହିଲ—ଟୁଲୁରେ, ଆମ ଗାଁରେ ଯୋଉ ଆମ୍ବଗଛ ସବୁ ନାଇଁନା, ଏ ବର୍ଷ ବହୁତ ଆମ୍ବ ହୋଇଚ । କେଡ଼େ ବଡ଼ ବଡ଼ ଆମ୍ବ । ମିଠା । ମା' ଆଉ ଉଷାମା, ଭାରି ଆମ୍ବରଙ୍କୁଣି । ବୋଉ କହୁଥିଲ—ଖରାଦିନେ ମା' ଆଉ ଉଷାମା ପନକ, ଲଙ୍କା, ନୁଣ ନେଇ ଦ୍ୱିପହରରେ ମାଳକୁ ପଳେଇଯାଉଥିଲେ । ମାଳରେ ତ ନଶୁଣି ଥାଏ । ସେମାନେ ଗଛରେ ଚଢ଼ି ଆମ୍ବ ପାରନ୍ତି । କାଟିକୁଟି ଲଙ୍କା ନୁଣ ଗୋଳେଇ ଦାବଦେଇ ଯା'ନ୍ତି । ପନ ସଫାକରି ଚୁପ୍‌ଚାପରେ ଘରକୁ ଖସିଆସନ୍ତି । ବାପା ତ ତାସ୍ ଖେଳୁଥାନ୍ତି, କିଛି ଜାଣିପାରନ୍ତିନ । ମା' ଆଉ ଉଷାମା ଭାରି ଖଟା ଖାଇରଣି । ନାଇଁରେ । ଆମ ଆମ୍ବଗଛ ତଳେ ତଳେ ଯୋଉ ସପୁରୀଗଛ ସବୁ ନ ଥିଲେ, ଏ ବର୍ଷ ବହୁତ ଫଳିଚ । ସପୁରୀ ତତେ ଭଲଲାଗେନା । ଖଟାମିଠା ମିଶାମିଶି । ବୋଉ ତୋ ନାଁରେ, ମୋ ନାଁରେ ଯୋଉ ନଡ଼ିଆଗଛ ଦ୍ୱିଇଟା ପୋତିଥିଲା—

ଟୁଲୁ କହିଲ—କୋଉ ନଡ଼ିଆଗଛ କଲେ ନନା ?

ତୋର ମନେ ନାଇଁକ ? ଚଉରା ପାଖରେ ସେଇ ଯୋଉ ଗଛ ଦ୍ୱିଇଟା ' ଗୋଟାଏ ଲିଟୁ ନଡ଼ିଆ ଆଉ ଗୋଟାଏ ଟୁଲୁ ନଡ଼ିଆ । ବୋଉ କହିଚ—ସେ ଗଛରେ ଯେତେ ନଡ଼ିଆ ହବ, ସବୁଯାକ ଆମେ ଖାଇବା ।

—ଆଉ କେହି ଖାଇବେନ ? ବାପା, ମା’, ଉଷାମା, ସାନବାପା ?

—ଖାଇବେ ଯେ, ଆମେ ଦେଲେ ଯାଇ ଖାଇବେ । ନ ଦେଲେ ଜମାରୁ ଛୁଇଁପାରିବେନ । ତାଙ୍କର ଗଛ ନାଇଁକି ? ଆମ ଗଛରେ ଏ ବର୍ଷ ନଡ଼ିଆ ଫଳିଛି । ଉଷାମା ଲେଖିଥିଲା । ଆମେ ଗଲେ, ସାନବାପାଙ୍କୁ କହିବା । ପାରିଦବ । ବୋଉର ବୁଢ଼ୀକି ଟିକେ ଦେଖେଇଦେଇ ସବୁ ଖାଇଦବା ।

ଝୁନ୍ନୁ ପୁଣି କହିଲା—ନନାଲୋ, ଗାଁରେ ଭଉତ ନଡ଼ିଆଗଛ, ଆମ୍ବଗଛ । ତୁ ଗଛରେ ଚଢ଼ି ତଳକୁ ପକେଇବୁ । ମୁଁ ଗୋଟେଇ ରଖିବି । ତୁ ଆସିଲେ ସାଙ୍ଗ ହେଇ ଖାଇବା । ବାପାମା’ କାନ୍ଦୁଥାନ୍ତୁ ।

ମୁଁ କହିଲି—ମନେ ମନେ ଖାଇଯା ବାପା । ପେଟ ପୂରିଯିବ । ବାପାମା’ ତ ଯାଉ ନାହାନ୍ତି, କେମିତି ଖାଇବୁ ଖାଆ । ସେଇଠି ଜନମ ହେଇଚନ୍ତି, କେମିତି ଯାଉ ନାହାନ୍ତି କେଜାଣି ?

ନନାଲୋ, ବାପା ତାଙ୍କ ଗାଁରେ ଜନମ ହେଇଥିଲେ । ତାଙ୍କ ଗାଁ ଗୃନ୍ଦପଲି । ମତେ କେମିତି କଉଚନ୍ତି—ଆମ ଗାଁ ଗୃନ୍ଦପଲି ବୋଲି । ମା’ କ’ଣ ବାପାଙ୍କ ଗାଁରେ ଜନମ ହେଇଥିଲା ? ତୁ କୋଉଠି ଜନମ ହେଇଥିଲୁ କଲୋ ନନା ?

—ମୁଁ ବମ୍ବେରେ ଜନ୍ମ ହେଇଥିଲି ।

—ତା’ହେଲେ ତୋ ଗାଁ ନାଁ ବମ୍ବେ ।

ମା’ କହେ—ମୁଁ ପରା ଜନମ ହେଇଥିଲି ବରଗଡ଼ରେ । ମୋ ଗାଁ ନାଁ ବରଗଡ଼ ହବ, ଗୃନ୍ଦପଲି କେମିତି ? ଗୃନ୍ଦପଲି ବାପାଙ୍କ ଗାଁ । ମତେ ଏଥର କିଏ ଗାଁ ନାଁ ପଚାରିଲେ ଜମାରୁ ଗୃନ୍ଦପଲି କହିବିନ । କହିବି ବରଗଡ଼ । ବାପା ତାଙ୍କ ଗାଁକୁ ନ ଯାଆନ୍ତୁ, ଆମର ଝୁନ୍ନୁକୁ ବରଗଡ଼ ପଠେଇବା ।

—ହଉ ବାପା, ସେଇଠିକି ଯା, ଖାଇବୁ, ଡେଇଁବୁ । ଝୁନ୍ନୁ କହିଲା—ତୋର ତୁ ନ ଯା । ମୋର ମୁଁ ଯିବିନ କି ? ତା କଥାଶୁଣି ମତେ ହସଲାଗିଲା । ମା’କୁ କହିଲି—ମାଆଲୋ, ଦେଖ୍, ଝୁନ୍ନୁ କହୁଚି—ତା ଗାଁ ନାଁ ବରଗଡ଼ । ଗୃନ୍ଦପଲି ବାପାଙ୍କ ଗାଁ । ମୂର୍ଖଟେ ହବ । ସୁଉଦୁ ମୂର୍ଖ । ତମେ ତ ଗାଁକୁ ଯାଉନ, ଆମେ ଆଉ କ’ଣ କରିବୁ ଯେ ? ଗାଁ ତ ଦେଖିବୁନ, ବହିରୁ ପଢ଼ି ଗାଁ ବିଷୟରେ ରଚନା ଲେଖିବୁ । ଟିକିଏ ଭୁଲ୍ ହେଇଗଲେ ଛେଚ୍ନ ଖାଇବୁ ।

ହଉ ରହ, ଦେଖିବୁ ଯେ । ତମେସବୁ ବଡ଼ ହେଇଗଲଣି ବୋଲି ବୋଉକଥା ମାନୁନ, ଆମେ ବଡ଼ହେଲେ ତମ କଥା ମାନିବୁ କି ? ଆମର ଯାହା ଇଚ୍ଛା ହବ, ତା କରିଯିବୁ ।

ମୋ କଥା ଶୁଣି ମା' ହସିଲା । କହିଲା—ହଉ ବାପା, ଯାହା ଇଚ୍ଛା ହବ ତା କରିଯିବୁ । ଏବେ କରୁନୁ, କିଏ ମନା କରୁଚି କି ?

ମୁଁ କହିଲି—ହଉ ଠିକ୍ ଅଛି, ତମର ତମେ ନ ଯା', ମୁଁ ଯିବି । ଏଠି ଘରି ଗରମ ହଉଚି । ସବୁ ସାଙ୍ଗ ମତେ କହୁଚନ୍ତି—ଲିଟୁ, ତମର ଗାଁ ନାଇଁକି ? ଯାଉନ ତ ? ତାଙ୍କ କଥା ମତେ ଜମା ଭଲ ଲାଗୁନି ।

—ଭଲ ନ ଲାଗିଲେ, ବାପାଙ୍କୁ କହୁନୁ । ମତେ କାଇଁକି କହୁଚୁ ? କ'ଣ ଖାଇଯାଉଚନ୍ତି ? ଏତେ ଡର ?

—ତୁ କହୁନୁ, ମୁଁ କାହିଁକି କହିବି ?

—ନ କହିଲେ, ନ ଯିବୁ, ମୋ ପାଖରେ କାଇଁକି ଖୁରି ଖାଉଚୁ ? ତା କଥା ଶୁଣି ମତେ କାନ୍ଦ ଲାଗିଲା । ଚଡ଼ଚଡ଼ ହେଇ କହିଲି—ଏମିତି ବାପା ଯେ, ଜନମଭୂଇଁକି ଯାଉ ନାହାନ୍ତି । ମା'ଠାରୁ ବି ତା ଗାଁକୁ ଯିବାକୁ ମନ ହଉନି । ମାମୁଘରଆଡ଼ୁ ଟିକେହେଲେ ବୁଲି ଆସନ୍ତି । ଧେତ୍, ନିଜେ ଯାଉ ନାହାନ୍ତି କି କାହାକୁ ଛାଡ଼ୁ ନାହାନ୍ତି । ଯେତେ କହିଲେ, ଖାଲି ଭଣ୍ଡୋଉଛନ୍ତି । ମିଛକଥା କହୁଛନ୍ତି । କହୁଛନ୍ତି ବହୁତ କାମ ବାକି ପଡ଼ିଛି । ଯ୍ୟାଙ୍କର ଯେମିତି ଖାଲି କାମ । କୋଉ କାମ କରୁଚ, ଜାଣିନି । ଖାଲି ପଢ଼ା, ଲେଖା । ଏଗୁଡ଼ାକ ପୁଣି କାମ । ବୋଉ ଥିଲାବେଳେ ତ ଯାଉଥିଲ । ସେତେବେଳେ କାମ ନ ଥିଲା ?

ବୋଉ ମରିଯାଇଚି ସିନା, ଗାଁରେ ଅଛି ଯେ । ରହିଥା । ନ ଯା' । ତମକୁ ଯଦି ସପନରେ ନ ବାଡ଼େଇଚି, ମତେ କହିବ । ତମକୁ ପିଲାଦିନେ ଯେମିତି ମାଡ଼ ଦଉଥିଲା, ସେମିତି ଥୋଇବ । ମୁଁ କାଇଁକି ଯିବାକୁ କହିବି କି ? ତମେ ତ ମତେ କହିବନା; ବାପାରେ, ସଜ ହ' ଗାଁକୁ ଯିବା ।

ତମେ ବୋଉ କଥା ନ ମାନିଲେ, ତା ବୁଢ଼ୀ ଆସିବ । ସେ ଯୋଉ ଘିରୀବୁଢ଼ୀ, ବାଡ଼େଇ ବାଡ଼େଇ ପିଠି ଫଟେଇଦବ । ତା ସାଙ୍ଗରେ ଆସିବେ ବଉଳୀ ଗାଈ, ଓଲି ବଳେଇ, ଭାଲୁଆ, ସୁନା ଆଉ କାଇଁଚି ବଳଦ ।

ନଡ଼ିଆ, ଆମ୍ବ, ପଣସ, ଜାମୁ, କଦଳୀ, ଆମ୍ବଡ଼ା, ଓଉ, ଲେମ୍ବୁ, ବଉଳ, ମନ୍ଦାର, ରଜନୀଗନ୍ଧା, ସୁଗନ୍ଧରାଜ, ମଲ୍ଲୀ, ହେନା, ରେଡ୍‌ଗ୍ଲାସ୍, ଆଉ ଆଉ ଗଛମାନେ ଆସିବେ । ଆସିବେ ନାକେଇଗଡ଼ଆ, ଟିକିଗଡ଼ଆ, ଦାଣ୍ଡଗଡ଼ଆ, ଧାନକଆରି, ଦାଣ୍ଡ କୂଅ । ତମ ବାପା, ଜେଜେବାପା, ଜେଜେମା, ଅଜା, ଆଈ ସମସ୍ତେ ଉଠିଆସିବେ । ଯିବ କୁଆଡ଼େ । ଗିଡ଼ଗିଡ଼ କରି ଘୋଷାରି-ନେବେ । ରହିଥା' । ପାଇବ ଯେ ପାନେ ।

ସେତେବେଳେ ଲଟ୍ଟୁ ଝଣ୍ଟୁଲୁ ଯେତେ ନେହୁରା ହେଇ ଡାକଲେ, ଜମାରୁ ଯିବେନି । ଯିବେନି ତ । ବଡ଼ ହେଇଯାଇଥିବେ । ତମେ ଧମକେଇ ପାରିବନି କି ମାରିପାରିବନି । ତାଙ୍କ ପାଖରେ ଆସି ଭେମାରଡ଼ି ପକେଇ, ଗଧଙ୍କ ଭଳିଆ କାନ୍ଦିବ । ରହିଥା' ପାନେ ପାଇବ । ଏବେ କଥା ନ ମାନ, ଆମର କ'ଣ ହେଇଯାଉଚି ?

ମୋ କଥା ଶୁଣି ମା'ଟା ପୁଣି ହସିଲା । ଖାଲି ହସିଲାବାଲା । ମୁଁ ଏମିତି କୋଉ ଖରାପ କଥା କହିଲି କି ? ପିଲାଙ୍କ କଥା ଶୁଣି ହସିବା, ବଡ଼ମାନଙ୍କର ଗୋଟାଏ ଖୋଇ ।

କହିଲା—ହଉ ବାପାମାନେ, ଭାଷଣ ସେତକ ଥାଉ । ଖାଇବେ ଆସନ୍ତୁ । ପୂଜନୀୟ ପିତା ଆସିଲେ, ସବୁକଥା କହିବେ ।

ଏମିତିଆ ମାଆଟା ଯେ, ଯାହା କହିଲେ ଖାଲି କହିବ—ବାପା ଆସନ୍ତୁ, ବାପା ଆସନ୍ତୁ, କହିଦେବି । କହୁନୁ । ଧମକୋଉଚୁ କ'ଣ ପାଇଁ । ତୁ ସିନା ବାପାଙ୍କୁ ଡରିବୁ । ଆମେ କାଇଁକି ଡରିବୁ ? ରୁହ ବଡ଼ ହେଇଯାଏ । ତମମାନଙ୍କ କଥା ବୁଝିବ ଯେ । ସେତେବେଳେ ମନେପକେଇବ । ଲଟ୍ଟୁ ଝଣ୍ଟୁଲୁଙ୍କୁ ଯେତେ ଡାକଲେ, ଶୁଣିବେ ଯେ ହବ । ରୁହ । ବେଳ ଆସୁଛି ।

ମୋ କଥା ଶୁଣି ମା' ଖାଲି ମୁରୁକି ମୁରୁକି ହସୁଥାଏ । ଏମିତି ହସିବା ଯେମିତି ବାପାମା'ଙ୍କର କାମ ।

ତାକୁ ଆଉ କିଛି କହିପାରିଲିନି । ହେଲେ, ଗାଁ କଥା ମୋର ଖାଲି ମନେପଡ଼ୁଥିଲା । ମନେ ମନେ ଭାବିଲି—କେମିତିଆ ବାପା କେଜାଣି ? ସେତେବେଳେ ଗାଁକୁ ନ ଗଲେ ପାଗଳ ହେଇଯାଉଥିଲେ । ଏବେ, ଯିବା ନାଁ ଧରୁ ନାହାନ୍ତି ।

**ଶେଷକଥା :**

ଅନ୍ୟମାନଙ୍କ ଆଖିରେ ଗୌତମ ଏବେ ଟିକିଏ ବଡ଼ ହୋଇଗଲାଣି । ଆମେ ତାଙ୍କୁ ବଡ଼ ବୋଲିପାରୁନୁ, କହିପାରିବୁନି । ବାପା ମା'ଙ୍କ ଆଗରେ ତାଙ୍କ ପୁଅଝିଅମାନେ ତ ସବୁଦିନେ ସାନପିଲା । ତେଣୁ ମାତ୍ର ଏଗାର ପୂରି ବାର ଚାଲିଥିବ । ଗୌତମକୁ କୋଉ ସାହସରେ ବା ଆମେ ବଡ଼ ବୋଲି କହିପାରିବୁ ?

ଏବେ ସେ ଡାଇରି କ'ଣ ଜାଣିଲାଣି । ମନକଲେ ଲେଖିପାରିବ । ମାତ୍ର ତାକୁ ଯେତେ କହିଲେ ବି ସେ ଲେଖୁନି । ନିଜ ଭିତରୁ ପ୍ରେରଣା ନ ଆସିଲେ, କୌଣସି କାର୍ଯ୍ୟ କରିବା ମଣିଷ ପକ୍ଷରେ ଯେ ସମ୍ଭବ ନୁହେଁ, ଏ ତତ୍ତ୍ୱ ଉପରେ ବିଶ୍ୱାସ କରୁଥିବା ମୋ ପରି ଜଣେ ଅସହାୟ ବାପା, ଡାଇରି ଲେଖିବାଲାଗି ପୁଅକୁ ବାଧ୍ୟ କରିବା ଏକ ଅନୁଚିତ ପ୍ରସଙ୍ଗ ବୋଲି ଭାବୁଚି । ତେଣୁ ସାମର୍ଥ୍ୟ ଥାଇ ସେ ଯେତେବେଳେ ମତେ ସ୍ୱୀକାର କରୁନି, ତା ବିଚାରକୁ ମୋ ଭାଷାରେ ପ୍ରକାଶ କରିବା ଯେ ଏକ ଭୟଙ୍କର ଭବିଷ୍ୟତର ହେତୁ ହୋଇପାରେ, ଏପରି ଏକ ବିକଳ ସମ୍ଭାବନାରୁ ନିଜକୁ ମୁଁ ମୁକ୍ତ ରଖିପାରୁନି ।

ତେବେ ତା'ର ଡାଇରି ଲେଖା ଧନ୍ଦାରେ ହାତ ନ ଦେବା ପଛରେ ଆଉ କେତୋଟି ଗୂଢ଼ କାରଣ ମଧ୍ୟ ରହିଛି । ବର୍ତ୍ତମାନ ସେ ଆମକୁ ଏମିତି ଅଦ୍‌ଭୁତ ପ୍ରଶ୍ନମାନ ପଚାରୁଚି—ଯାହାର ଉତ୍ତର ଦେବା ତ ଦୂରର କଥା, ତାହା ଶୁଣିଲାମାତ୍ରେ ହିଁ ଆମ ବୁଦ୍ଧି ବଣା ହୋଇଯାଉଚି । ସବୁତକ ପ୍ରଶ୍ନ ଦେହ ଓ ଜୀବନ କୈନ୍ଦ୍ରିକ । ଏ କଥାଗୁଡ଼ିକ ସେ ଶୁଣୁଚି ତା ସ୍କୁଲର ବୟସ୍କ ସାଙ୍ଗମାନଙ୍କ ପାଖରୁ । ସମ୍ଭବତଃ ସେମାନଙ୍କ ସହ ଆଲୋଚନାରେ ସେ ଭାଗ ନେଉଚି ଏବଂ ଘର ଭିତରେ ଆଲୋଚନାର ସାରାଂଶକୁ ଥୋଉଚି । ଏଗାର ବାର ବର୍ଷର ବଡ଼ୁଆ ପିଲାଟି ମା' ଆଗରେ ଲଙ୍ଗଳା ହୋଇ ଖେଳ ଦେଖେଇବାକୁ ଲାଜ କରୁନି । ଏପରିକି ଯଥାଶୀଘ୍ର ବାହା କରିଦେଲେ ସେ ତା ଇସ୍ତ୍ରୀ ପାଖରେ ରହିପାରିବ ବୋଲି ରସିକତା କରୁଚି । ତା ବଡ଼ିବୋଉ ପାଖରେ ଶୋଇ ଯୋଉ ପ୍ରକାରର ଆଚରଣ କରୁଚି ତାହା ଯେତିକି ହାସ୍ୟୋଦ୍ଦୀପକ ତା'ଠାରୁ ଅଧିକ ବେଦନାଦାୟକ । ତା କଅଁଳ ମନର ନିର୍ବୋଧତା ଆମକୁ ବିବ୍ରତ କରୁଛି । ଆମେ ନୀରବ ରହିବାକୁ ଉଚିତ ମଣିଲେ

ବି ତା'ର ଦୌରାତ୍ମ୍ୟରୁ ରକ୍ଷା ମିଳୁନି । କିଏ ବା ଉତ୍ତର ଦେଇ ତାକୁ ତୁଷ୍ଟ କରିପାରିବ ? ଖୋଲି ଦେଇପାରିବ ତା ପ୍ରଶ୍ନଗୁଡ଼ିକର ଗୂଢ଼ ରହସ୍ୟ ?

ତା ବିରୋଧରେ ଆମ ପାଖକୁ କିଛି କମ୍‌ସଂଖ୍ୟକ ଅଭିଯୋଗ ଆସୁନି । କ୍ଲାସ୍‌ରେ କୋଉ ସାର୍‌ଙ୍କ ପଢ଼େଇବାର ଭଙ୍ଗୀକୁ ନକଲ କରୁଚି । କୋଉ ବଡ଼ିଲି ଝିଅସହ କଳି କରୁଚି । ଆଉ କାହା କଥାରେ ପଡ଼ି କାହା ଦେହରେ ଧକ୍‌କା ଖାଉଚି । ଅକ୍ଷୟ ମହାନ୍ତିଙ୍କ ବହ୍ୱାର୍ଥବୋଧକ ଗୀତ ବୋଲି ନାଚୁଚି । ମା'କୁ କହୁଚି—ମା'ଲୋ, ତୋ ପରି କାଳୀ, ଟେଣ୍ଟା, ଶ୍ରେଷ୍ଠୀକୁ ବାପା କେମିତି ବାହା ହେଲେ ? ବାପା ନା ବାଗି ପ୍ୟାଣ୍ଟ ପିନ୍ଧି, ଇନ୍‌ସାର୍ଟ କରି ବ୍ୱିରୋ ପରି ବିଶୁଛନ୍ତି । ବଖିବୋଉକୁ କହୁଚି—ତୋ ଦଦ ପାଣିକଖାରୁ, ଗୁନ୍ଦପଲିବୋଉ ଦଦ ବେଲ । ପରୀକ୍ଷାରେ କପି ଯୋଗେଇବା ପାଇଁ ବହି ଚିରୁଥିବା କଲେଜ ପିଲାମାନଙ୍କୁ କହୁଚି—ଲେଡିଜ୍ ହଷ୍ଟେଲରେ ଢୋକାଙ୍କ ପଛରେ ଲାଇନ୍ ମାରିବାକୁ ତ ବେଳ ଅଣ୍ଟୁନି, ପାଠ ନ ପଢ଼ି ବହି ଚିରୁଚ କିଆଁ ? ତା ଆଲୋଚନାର ପୁଣି ପ୍ରଧାନ ସାଥୀ ହେଇଚି ଛ' ବର୍ଷର ସାନଭାଇ ଲିଟୁ । ସେ ଯେ ବଡ଼ ହେଇଗଲାଣି, ଝିଅ ହେଇଥିଲେ, ବାପାମା'କୁ ବା'ଘର ଚିନ୍ତା ଘାରନ୍ତାଣି—ଏ କଥା ସେ ଜାଣିପାରୁନି ।

ତା'ର ସବୁକଥା ଆମେ ଶୁଣୁଚୁ, ସବୁ କାମ ଦେଖୁଚୁ । ମାତ୍ର କିଛି ନ ଶୁଣିଲା, ନ ଦେଖିଲା ପରି ଅଭିନୟ କରୁଚୁ । କ'ଣ କରିବୁ ତା'ର କୂଳକିନାରା ପାଉନୁ ।

ତାହା ତ ତା ବୟସର ପିଲାମାନଙ୍କର ଅନୁସନ୍ଧିତ୍ସୁ, ଜିଜ୍ଞାସୁ ମନର ପ୍ରଶ୍ନ । ସବୁକିଛିକୁ ଖୋଲି ପରୀକ୍ଷା କରି ଦେଖିବାରେ ତ ତା ମନ ଉଦ୍‌ବେଳିତ ।

ତା'ର ପ୍ରଶ୍ନ ଓ ଆଚରଣ ଭିତରେ ଯେଉଁ ପବିତ୍ର, ସରଳ ଓ କୋମଳ ପ୍ରବୃତ୍ତି ରହିଚି, ସେଠି ପରାଜିତ ହେଉଛି ଆମର ଅସହାୟ ପିତୃତ୍ୱ ଓ ମାତୃତ୍ୱ । ତା'ର ଆଚରଣକୁ ତ ନିୟନ୍ତ୍ରଣ କରୁଚି ଏ ସମୟ, ସମାଜ ଓ ଆମ ଜୀବନ ବଞ୍ଚିବାର ଧାରା । ତେଣୁ ଆମେ ବାରମ୍ବାର ତା ପାଖରେ ଧକ୍‌କା ଖାଉଚୁ ଏବଂ ତା ସହିତ ସାଲିସ୍ କରିବାକୁ ବାଧ୍ୟ ହେଉଛୁ । ଏହା ବୋଧହୁଏ ବାପାମା'ମାନଙ୍କର ଭାଗ୍ୟ । ଆମେ ପିତୃତ୍ୱ ଓ ମାତୃତ୍ୱର ସୌଭାଗ୍ୟକୁ

ଅସ୍ୱୀକାର କରିପାରିବୁ ବା କେମିତି ? ସ୍ରଷ୍ଟାର ଇଚ୍ଛା ଆଉ ଆକଟର ସୀମା ଭିତରେ ସୃଷ୍ଟି କ'ଣ କେବେ ଆପଣା ବେଗକୁ ସମର୍ପଣ କରିପାରିଲାଣି ? ସେ ତ ସ୍ୱତନ୍ତ୍ର—ସ୍ରଷ୍ଟାପରି ।

ତେଣୁ ଆଜିକାଲି ଗୌତମକୁ ମୁଁ ବରାବର କହୁଚି—ବାପାରେ ଡାଇରି ଲେଖ । ପିଲାଦିନେ ଯେମିତି ଲେଖୁଥିଲୁ, ସେମିତି ଲେଖିବୁନି । ବରଂ ଏ ସମାଜ, ସମୟ, ପରିବେଶ, ମଣିଷମାନେ ଯେମିତି ଲାଗୁଛନ୍ତି, ଲାଗିବାର କାରଣଗୁଡ଼ିକ ବି ଲେଖ ।

ସେ ହଁ କରୁଚି, ମାତ୍ର ଲେଖୁନି ।

ସତ କଥାଗୁଡ଼ାକ ଲେଖିବାରେ ଯେ ଅନେକ ବିପଦ ରହିଛି—ତା'ର କଅଁଳ ମନ ଏକଥା ଜାଣିପାରିଲାଣି ବୋଧହୁଏ । ମିଛ କହିବାକୁ ତା ଭିତରେ ଆଉ ଭୟ କି ସଙ୍କୋଚ ଭାବ ନାହିଁ । ମିଛୁଆମାନଙ୍କ ସାମ୍ରାଜ୍ୟରେ କେହି କ'ଣ କେବେ ଏକ ମୁକ୍ତ ଜୀବନ ବଞ୍ଚିପାରେ ? ତା ପାଖରୁ ଏପରି ଏକ ଜୀବନ ଆଶା କରିବାର ଅର୍ଥ ତ ଦୁଃଖକୁ ଡାକିବା । ତେଣୁ ଯେତେବେଳେ ସେ ଲେଖି ଜାଣି ନ ଥିଲା—ମୁଁ ତା'ପାଇଁ ଲେଖୁଥିଲି । ଏବେ ତ ସେ ଲେଖି ଜାଣିଲାଣି । ମୋର ଆଉ ତା କଥାରେ ମଥା ପୂରେଇ ଲାଭ ବା କ'ଣ ? ତା ମନର ଗୋପନ କଥାଗୁଡ଼ାକ ଏବେ ଗୋପ୍ୟ ରହୁ । ରହିବା କ'ଣ ଉଚିତ ନୁହେଁ ?

ମାତ୍ର ଦୃଢ଼ ବିଶ୍ୱାସ, ଏକ ମୁକ୍ତ ଜୀବନ ଉପରେ ବିଶ୍ୱାସ କରୁଥିବା ନିଷ୍ଠୁର ସରଳ ପ୍ରାଣ ନିଜକୁ ଖୋଲିଦବାରେ କୁଣ୍ଠିତ ହେବନି । ସେ ଖାରୁଙ୍କ ପରି ଜୀବନ ଉପରେ ବିଳାପ କରିପାରିବନି । ସେ ଦିନେ ନା ଦିନେ ତା ଡାଇରି ଲେଖିବ ଏବଂ ତାହା ହେବ ଏକ ମୁକ୍ତ ଜୀବନର ଜୀବନ-ବୋଧ । ମୁଁ ଯାହା ଲେଖିପାରି ନ ଥା'ନ୍ତି ସେ କଥା ସେ ଲେଖିବ । ସେ ଦିନ ମୁଁ ଜୀବନରେ ସବୁଠାରୁ ବେଶୀ ଖୁସି ହେବି । କାରଣ ତାହା ହେବ ମୋ ଜୀବନର ଚମତ୍କାର ପରାଜୟର ଦିନ । ପ୍ରତ୍ୟେକ ବାପା ତ ତା ପୁଅ ନିକଟରୁ ଏମିତି ଏକ ସମୟର ଅପେକ୍ଷା ରଖିଥାଏ ।

ଦେଖେ, କେବେ ଇତି ହେଉଛି ମୋର ଅପେକ୍ଷାର ଦିନ ।

---



ଓଡ଼ିଆ କଥାସାହିତ୍ୟ ପରଂପରାରେ ଗୌରାଂଗଚରଣ ଦାଶ ଏକ ପରିଚିତ ଏବଂ ପୃଥକ୍ ସ୍ୱର । ତାଙ୍କ ସୃଷ୍ଟିଗୁଡ଼ିକ ଅନୁଭବରେ ପରିସିଦ୍ଧ ଏବଂ ଆତ୍ମକଥନମୂଳକ ରୀତିରେ ହିଁ ପ୍ରକାଶିତ । ତାହା ସୃଜନଶୀଳ ଅଥବା ଗବେଷଣାଧର୍ମୀ । ଯେଉଁ ପ୍ରକାରର ରଚନା ହେଉନା କାହିଁକି, ସେଗୁଡ଼ିକ ଭିତରେ ଆପଣାକୁ ପ୍ରକାଶ ନ କଲେ ସେ ଯେମିତି ବଞ୍ଚି ପାରିବେ ନାହିଁ ।

ସାହିତ୍ୟର ବିଭିନ୍ନ ବର୍ଗ ଭିତରେ ଥିବା ଗ୍ରାବରେଖାକୁ ଅସ୍ୱୀକାର କରୁଥିବା ଶ୍ରୀ ଦାଶ ଏଥିପାଇଁ ଅବଶ୍ୟ ଅନେକଙ୍କ ଆଖିମିଟିକାର ଶିକାର ହୋଇଛନ୍ତି, ମାତ୍ର ନିଜ ବିଚାରରୁ ବିଚ୍ୟୁତ ହେଇ ନାହାନ୍ତି ।

ତାଙ୍କ ବିବଦମାନ ବ୍ୟକ୍ତିତ୍ୱକୁ ଶ୍ରଦ୍ଧାର ସହ ସ୍ୱୀକାର କରିଛନ୍ତି ସମ୍ବଲପୁର ବିଶ୍ୱବିଦ୍ୟାଳୟ (୧୯୮୩), ଉତ୍କଳ ସାହିତ୍ୟ ସମାଜ (୧୯୮୬) ଏବଂ ଓଡ଼ିଆ ଗବେଷଣା ପରିଷଦ (୧୯୯୪) ଆଦି ଅନୁଷ୍ଠାନ ।

ଗୌତମର ତାଇରି ତାଙ୍କ ସୃଜନଶୀଳ ପ୍ରତିଭାର ଏକ ଅଭିନବ ଇସ୍ତାହାର ।